# ରବୀନ୍ଦ୍ର ସ୍ମରଣିକା

## ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦ

ସମ୍ପାଦକ

**ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ**

ମୁଖ୍ୟ ଅଧ୍ୟାପକ

ଓଡ଼ିଆ ବିଭାଗ, ବିଶ୍ୱଭାରତୀ, ଶାନ୍ତିନିକେତନ

ରବୀନ୍ଦ୍ର ଶତବର୍ଷ ପୂର୍ତ୍ତି ଉପଲକ୍ଷେ ପ୍ରକାଶିତ,
ବଂ ୨୫ ବୈଶାଖ ୧୩୬୮ : ୧୮ ବୈଶାଖ ୧୮୮୩ ଶକାବ୍ଦ: ୮ ମେ ୧୯୬୧ ଖ୍ରୀଷ୍ଟାବ୍ଦ

ସଂସ୍କରଣ—ଅକ୍ଟୋବର, ୧୯୬୩

ମୂଲ୍ୟ—ଏକଟଙ୍କା ପଚଶ ନଆ ପଇସା

ପ୍ରକାଶକ
ବିଶ୍ୱଭାରତୀ ଓଡ଼ିଆ ସାହିତ୍ୟ ପରିଷଦ
ଶାନ୍ତିନିକେତନ

ମୁଦ୍ରକ—
ଶ୍ରୀ [illegible]
ପ୍ରଜାତନ୍ତ୍ର ପ୍ରେସ—କଟକ

# ଭୂମିକା

କବିତା, କ୍ଷୁଦ୍ରଗଳ୍ପ, ନାଟକ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ଆଦି ସାହିତ୍ୟର ବିଭିନ୍ନ ବିଭବରେ ରବୀନ୍ଦ୍ର-ପ୍ରତିଭା ଏକ ସୁସ୍ପଷ୍ଟ ସ୍ୱାକ୍ଷର ଅଙ୍କନ କରିଛି । କେବଳ ସାହିତ୍ୟ ନୁହେଁ, ସଙ୍ଗୀତ ଓ କଳା କ୍ଷେତ୍ରରେ ତାଙ୍କର ଦାନ ଅନନ୍ୟ ସାଧାରଣ । ସମସାମୟିକ ସମାଜ ଓ କାଳର ପରିଧି ଅତିକ୍ରମ କରି ଯେଉଁ ଉଦାର ମାନବିକତା ତାଙ୍କଠାରେ ପ୍ରକାଶ ପାଇଛି, ତାହା କେବଳ ଗାନ୍ଧୀଜୀଙ୍କ ସହ ତୁଳନୀୟ । ଗୋଟିଏ କଥାରେ କହିଲେ, ଭାରତୀୟ ଜୀବନାଦର୍ଶର ମର୍ମବାଣୀ ଗାନ୍ଧୀ ଓ ରବୀନ୍ଦ୍ର-ନାଥଙ୍କ ମାଧ୍ୟମରେ ଅଭିବ୍ୟକ୍ତ ହୋଇଥିଲା । ଏ ଦୁହେଁ ଥିଲେ ପୃଥିବୀ-ସମକ୍ଷରେ ଭାରତୀୟ ମୂଲ୍ୟବୋଧର ପ୍ରତୀକ ।

ଶିକ୍ଷାକ୍ଷେତ୍ରରେ ରବୀନ୍ଦ୍ରନାଥଙ୍କର ଏକ ବିଶେଷ ସ୍ଥାନ ରହିଛି । ଗାନ୍ଧିଜୀଙ୍କ ପରି ସେ ମଧ୍ୟ ଆଶ୍ରମ ବିଦ୍ୟାଳୟର ଜଣେ ପଥପୁରୋଧା ଥିଲେ । ଜାତୀୟତା-ଅନୁପ୍ରାଣିତ ଭାରତରେ ଯେତେବେଳେ ଆତ୍ମ-ଆବିଷ୍କାର ପ୍ରଚେଷ୍ଟା ଦେଖାଗଲା, ସେତେବେଳେ ଭାରତୀୟ ମନୀଷାର ଶିକ୍ଷାକ୍ଷେତ୍ରକୁ ଶ୍ରେଷ୍ଠ ଦାନ ହିସାବରେ ବରୋଦାର ଗଙ୍ଗନାଥ ବିଦ୍ୟାଳୟ, ଅଧ୍ୟାପକ ବିଜାପୁରକରଙ୍କଦ୍ୱାରା ପ୍ରତିଷ୍ଠିତ ସମର୍ଥ ବିଦ୍ୟାଳୟ, ଆନିବେଶାନ୍ତ ଓ ତାଙ୍କର ଥିଓସଫିକାଲ ସୋସାଇଟିର ବନାରସ ଓ ଆଡ଼େୟାରରେ ଆଶ୍ରମ-ଜୀବନ ସଂକ୍ରାନ୍ତ ପରୀକ୍ଷା ନିରୀକ୍ଷା, ଉତ୍ତର-ଭାରତର ବିଭିନ୍ନ ଗୁରୁକୁଳ ଓ ଋଷିକୁଳ, ଓଡ଼ିଶାର ସତ୍ୟବାଦୀ ବକୁଳ-ବିହାର, ଶାନ୍ତିନିକେତନର ବ୍ରହ୍ମଚର୍ଯ୍ୟାଶ୍ରମ ଓ ଗାନ୍ଧି ଆଶ୍ରମ ଆଦି ଅନୁଷ୍ଠାନସବୁରେ ନୂତନ ଶିକ୍ଷାପଦ୍ଧତି ସମ୍ପର୍କୀୟ ବିଚାର ଆଲୋଚନା ଚାଲିଥିଲା । ଭାରତ ବାହାରେ ଦକ୍ଷିଣ-ଆଫ୍ରିକାରେ ଗାନ୍ଧିଜୀଙ୍କର ଫିନିକ୍ସ ବସତି ଓ ଋଷି ଟଲଷ୍ଟୟଙ୍କର ରୁଷିଆ କୃଷକମାନଙ୍କ ପାଇଁ ମୁକ୍ତ ଓ ସୁସ୍ଥ ଶିକ୍ଷା-ପରମ୍ପରା ଗଢ଼ିବା ଆନ୍ଦୋଳନକୁ ଭାରତୀୟ ପ୍ରଚେଷ୍ଟାର ସହୋଦରରୂପେ ଧରାଯାଇ-ପାରେ । ରବୀନ୍ଦ୍ରନାଥଙ୍କର ଆଶ୍ରମ ସମାଜ-ବିମୁଖ ବ୍ରହ୍ମଋଷିଙ୍କ ପାଇଁ ନ ଥିଲା । ଜ୍ଞାନ ଓ କର୍ମର ସୁସଙ୍ଗତ ସମାବେଶରେ ଏକତ୍ର ଅବସ୍ଥାନ ସୂତ୍ରରେ ମୁକ୍ତ ବାତାବରଣ ମଧ୍ୟରେ ଉଚ୍ଚତମ ଆଦର୍ଶର ଅନୁଭବ ଓ ସର୍ବାଙ୍ଗୀନ ମାନବ-ସୃଷ୍ଟି ତାଙ୍କ ଆଶ୍ରମ-ଶିକ୍ଷାର ମୂଳମନ୍ତ୍ର ଥିଲା ।

ଉପନିଷଦର ସତ୍ୟକାମ-ଜାବାଲ ତାଙ୍କ ଗୁରୁଙ୍କ ପ୍ରଶ୍ନ—'କିଏ ତୁମକୁ ସତ୍ୟଶିକ୍ଷା ଦେଲା ?'ର ଉତ୍ତରରେ କହିଥିଲେ, 'ଅନ୍ୟେ ମନୁଷ୍ୟେଭ୍ୟଃ' । ଏହାର ଅର୍ଥ ହେଉଛି—

କୌଣସି ମନୁଷ୍ୟଠାରୁ ସେ ଶିକ୍ଷାଲାଭ କରି ନାହାନ୍ତି । ଅନନ୍ତ ବୈଚିତ୍ର୍ୟମୟୀ ପ୍ରକୃତିରୁ ସୃଷ୍ଟିଲୀଳାର ନିଗୂଢ଼ ରହସ୍ୟ ତାଙ୍କ ମନୋରାଜ୍ୟରେ ପ୍ରତିଭାତ ହୋଇଛି । ରବୀନ୍ଦ୍ରନାଥ ଆବାଲ୍ୟ-ପ୍ରକୃତି-ଲାଳିତ ହୋଇ ଯେଉଁ ବିରାଟ ଜୀବନ-ବୋଧର ସ୍ପନ୍ଦନ ଅନୁଭବ କରିପାରିଥିଲେ, ନିଷ୍ଠା ସହକାରେ ଜ୍ଞାନସାଧନା ଦ୍ୱାରା ସେହି ବୋଧର ସୁସଂଗତ ପ୍ରକାଶ କରିବାରେ ସେ ସଂପୂର୍ଣ୍ଣ ସଫଳ ହୋଇଛନ୍ତି । ଉଦାର ମାନବିକତାଧର୍ମୀ ତାଙ୍କର ସାହିତ୍ୟ ଯେ ବିଶ୍ୱଦରବାରରେ ସ୍ୱୀକୃତ ହେବ, ଏଥିରେ ଆଶ୍ଚର୍ଯ୍ୟର କଥା କ'ଣ ଅଛି ?

ରବୀନ୍ଦ୍ର ଶତବାର୍ଷିକୀ ଉତ୍ସବରେ ଏହି ବହୁମୁଖୀ ପ୍ରତିଭାକୁ ଶ୍ରଦ୍ଧାଞ୍ଜଳି ଜଣାଇ ପୃଥିବୀର ବିଭିନ୍ନ କୋଣରେ ଉତ୍ସବ, ଅନୁଷ୍ଠାନମାନ ପ୍ରତିଷ୍ଠିତ ହୋଇଛି ଓ ବହୁ ଉପାଦେୟ ଆଲୋଚନାତ୍ମକ ଗ୍ରନ୍ଥ ପ୍ରକାଶିତ ହୋଇଛି । ଗଙ୍ଗାଜଳରେ ଗଙ୍ଗା ପୂଜା କଲା ପରି ଶାନ୍ତିନିକେତନର ଓଡ଼ିଆ ବିଭାଗ ତରଫରୁ କବିଗୁରୁଙ୍କ ଉଦ୍ଦେଶ୍ୟରେ ତାଙ୍କର ପ୍ରତିଭାର କେତୋଟି ଦିଗ ଆଲୋଚନା କରି ଏହି କ୍ଷୁଦ୍ର ସ୍ମରଣିକାଟି ପ୍ରକାଶ ପାଉଛି । ଓଡ଼ିଶା ରବୀନ୍ଦ୍ର ଶତବାର୍ଷିକୀ କମିଟି ଓ 'ସମାଜ' ଅନୁଷ୍ଠାନର ସାହାଯ୍ୟ ବ୍ୟତିରେକେ ଏହି ପୁସ୍ତକର ପ୍ରକାଶ ଅସମ୍ଭବ ହୋଇଥାନ୍ତା । ଉଭୟ ଅନୁଷ୍ଠାନର କର୍ମକର୍ତ୍ତାମାନଙ୍କ ନିକଟରେ ମୁଁ କୃତଜ୍ଞତା ପ୍ରକାଶ କରୁଛି । ବିଶ୍ୱଭାରତୀ ଓଡ଼ିଆ ପରିଷଦର ପ୍ରାକ୍ତନ ସଭାପତି ଅଧ୍ୟାପକ କୃଷ୍ଣବିହାରୀ ଦାଶ ଓ ଉପସ୍ଥିତ ଅଧ୍ୟାପକ ଓ ଛାତ୍ରମାନଙ୍କର ପ୍ରଚେଷ୍ଟା ଓ ଉତ୍ସାହ, ଏ ପୁସ୍ତିକା ପ୍ରକାଶ ପଛରେ ରହିଛି । ବିଶ୍ୱଭାରତୀର ଉପାଚାର୍ଯ୍ୟ ଶ୍ରୀଯୁକ୍ତ ସୁଧୀରଞ୍ଜନ ଦାସ ଏହି ସ୍ମରଣିକା ପ୍ରକାଶ ଦିଗରେ ଆମକୁ ବହୁମତେ ଉତ୍ସାହିତ କରିଛନ୍ତି ଓ ଏହାର ପ୍ରାକ୍‌କଥନ ଲେଖିଛନ୍ତି । ଲେଖକମାନେ ଆମର ଅନୁରୋଧ କ୍ରମେ ସେମାନଙ୍କର ବହୁମୂଲ୍ୟ ସମୟ ବ୍ୟୟ କରି ଲେଖା ଦେଇଛନ୍ତି ଓ ଅନୁବାଦ କରି ଦେଇଛନ୍ତି । ମୁଦ୍ରଣର ସମସ୍ତ ଦାୟିତ୍ୱ 'ସମାଜ' ପ୍ରେସର ମ୍ୟାନେଜର ଓ କର୍ମଚାରୀମାନେ ଗ୍ରହଣ କରିଛନ୍ତି । ଏ ସମସ୍ତଙ୍କ ନିକଟରେ ମୁଁ କୃତଜ୍ଞତା ପ୍ରକାଶ କରୁଛି । ନାନା କାରଣରୁ ଏହି ପୁସ୍ତିକା ପ୍ରକାଶରେ ବିଳମ୍ବ ଘଟିଛି । ଏହି ବିଳମ୍ବ ଅନିଚ୍ଛାକୃତ; ତେଣୁ କ୍ଷମଣୀୟ ।

ଦଶହରା

ତା ୮।୧୦।୬୨



**ଦେବୀପ୍ରସନ୍ନ ପଟ୍ଟନାୟକ**
ମୁଖ୍ୟ ଅଧ୍ୟାପକ, ବିଶ୍ୱଭାରତୀ ଓଡ଼ିଆ ବିଭାଗ;
ସଭାପତି, ଓଡ଼ିଆ ସାହିତ୍ୟ-ପରିଷଦ,
ବିଶ୍ୱଭାରତୀ

———

# ବିଶ୍ୱ-ଭାରତୀ

ପ୍ରତିଷ୍ଠାତା

**ରବୀନ୍ଦ୍ରନାଥ ଠାକୁର**

ଆଚାର୍ଯ୍ୟ
ଜବାହରଲାଲ ନେହେରୁ
ଉପାଚାର୍ଯ୍ୟ
ସୁଧୀରଞ୍ଜନ ଦାସ
ନଂ. ଜି/ଏମ୍ ୮/

ଶାନ୍ତିନିକେତନ
ପଶ୍ଚିମ-ବଙ୍ଗ, ଭାରତ
ଫୋନ-ବୋଲପୁର-୨୧

ବିଶ୍ୱ-ଭାରତୀ ଓଡ଼ିଆ ସାହିତ୍ୟ-ପରିଷଦ ଗୁରୁଦେବ ରବୀନ୍ଦ୍ରନାଥଠାକୁରଙ୍କ ଶତବାର୍ଷିକ ଜନ୍ମ ଉପଲକ୍ଷେ ଏକ ସ୍ମରଣିକା ପ୍ରକାଶ କରିବା ଅତି ଆନନ୍ଦର ବିଷୟ । ତାଙ୍କର ବହୁମୁଖୀ ପ୍ରତିଭା ଓ ବିଶ୍ୱ-ପ୍ରେମର ବିପୁଳ ମହତ୍ତ୍ୱ ଉପଲବ୍ଧିରେ ପାଠକମାନଙ୍କୁ କିଞ୍ଚିତ ସାହାଯ୍ୟ କଲେ ଏହି ସ୍ମରଣିକା ପ୍ରକାଶର ଉଦ୍ଦେଶ୍ୟ ସଫଳ ହେବ । ଓଡ଼ିଶାର 'ରବୀନ୍ଦ୍ର ଶତବାର୍ଷିକୀ ସମିତି' ଏବଂ 'ସମାଜ' ପ୍ରକାଶନର ଆର୍ଥିକ ସହାୟତାରେ ଏହି ଗ୍ରନ୍ଥ ପ୍ରକାଶିତ ହୋଇଛି । ମୁଁ ସେମାନଙ୍କୁ ଧନ୍ୟବାଦ ଦେଉଛି ଓ ଏହି ବିଶ୍ୱବିଦ୍ୟାଳୟର ଯେଉଁ ଶିକ୍ଷକ ତଥା ଛାତ୍ର-ଛାତ୍ରୀମାନଙ୍କର ସହଯୋଗିତାରେ ଏହି ଗ୍ରନ୍ଥ ପ୍ରକାଶିତ, ସେମାନଙ୍କୁ ମୋର ଆନ୍ତରିକ ଅଭିନନ୍ଦନ ଜଣାଉଛି ।

ସ୍ୱା-ସୁଧୀରଞ୍ଜନ ଦାସ
ଉପାଚାର୍ଯ୍ୟ, ବିଶ୍ୱଭାରତୀ

PHONE : BOLPUR - 21

# VISWA-BHARATI

*Founded By*

**Rabindranath Tagore**

ACHARYA,
JAWAHARLAL NEHRU
UPACHARYA
SUDHI RANJAN DAS

SANTINIKETAN
WEST BENGAL, INDIA

No. G./M 8./

It is indeed gratifying that the Odia Sahitya Parishad, a literary organisation at the Viswabharati, is bringing out a souvenir to mark the Birth Centenary of Gurudeva Rabindranath Tagore. The souvenir volume will have fulfilled its purpose if it helped the readers to get a glimpse of the many-faceted genius of Rabindranath and in understanding the great significance of his message of universalism. The publication of this volume has been made possible through generous contributions from the Orissa Tagore Centenary Committee and the *Samaj publications, Orissa*. I take this oppertunity to offer my sincere thanks to them and I congratulate the students and staff of this University, who are responsible for its publication.

**S. R. Das**
**Vice-Chancellor**
VISWA BHARATI

# ସୂଚିପତ୍ର

# ଗତ ବାର୍ଷିକୀର ଭାବନା

—ଚିତ୍ତରଞ୍ଜନ ଦାସ

ପ୍ରାୟ ନଅ ବର୍ଷ ତଳେ ମୁଁ ଗ୍ରୀଷ୍ମଛୁଟିରେ ଡେନ୍‌ମାର୍କରୁ ହଲାଣ୍ଡ୍ ଦେଶକୁ ବୁଲି ଯାଇଥାଏ ଓ ଲାଇଡ଼େନ୍‌ ସହରରେ ଅବସ୍ଥାନ କରୁଥାଏ । ଶାନ୍ତିନିକେତନରେ ଥିଲାବେଳେ ସପ୍ତଦଶ ଶତାବ୍ଦୀର ଇଉରୋପୀୟ ଦାର୍ଶନିକ ସ୍ପିନୋଜାଙ୍କ ବିଷୟରେ ମୁଁ କିଛି ଅଧ୍ୟୟନ କରିଥିଲି ଓ ଶେଷ ପରୀକ୍ଷାରେ ତାଙ୍କର ଉପରେ ଏକ ନିବନ୍ଧ ମଧ୍ୟ ଲେଖିଥିଲି । ସ୍ପିନୋଜା ହଲାଣ୍ଡ ଦେଶର ଅଧିବାସୀ ଥିଲେ । ଯେଉଁସବୁ ସ୍ଥାନରେ ସେ ବାସ କରୁଥିଲେ, ନିଜେ ଯାଇ ସେହିସବୁ ସ୍ଥାନ ଦେଖିଆସିବା ମୋର ହଲାଣ୍ଡ-ଭ୍ରମଣର ସର୍ବପ୍ରଧାନ ଉଦ୍ଦେଶ୍ୟ ଥିଲା । ଲାଇଡ଼େନ୍ ବିଶ୍ୱବିଦ୍ୟାଳୟ ମୋର ଏହି ଭ୍ରମଣରେ ମୋତେ ଅନେକ ସାହାଯ୍ୟ କରିଥିଲା ଏବଂ ମୋତେ ସବୁ ସ୍ଥାନ ବୁଲି ଦେଖାଇଦେବା ସକାଶେ ଜଣେ ଅଧ୍ୟାପକଙ୍କୁ ମଧ୍ୟ ମୋ ସହିତ ପରିଚିତ କରାଇ ଦେଇଥିଲା । ଲାଇଡ଼େନ୍ ଛାଡ଼ିବା ପୂର୍ବରୁ ଦିନେ ମୁଁ ସେହି ଅଧ୍ୟାପକଙ୍କ ଘରକୁ ମଧ୍ୟାହ୍ନ ଭୋଜନ ଲାଗି ନିମନ୍ତ୍ରିତ ହୋଇ ଯାଇଥିଲି । ଭୋଜନ ସମାପ୍ତ ହେବା ପରେ ଆମ ଦୁହିଁଙ୍କ ଭିତରେ ନାନାପ୍ରକାର ଗପସପ ପଡ଼ିଥାଏ । ହଠାତ୍ କ'ଣ ଭାବି ମୁଁ ବଡ଼ ଅନ୍ୟମନା ଭାବରେ ଟେବୁଲ୍ ଉପରେ ପଡ଼ିଥିବା ଏକ ସ୍ଥାନୀୟ ସମ୍ବାଦପତ୍ରକୁ ହାତରେ ଉଠାଇ ଧରିଲି ଏବଂ ସମ୍ବାଦଗୁଡ଼ିକ ପଢ଼ିବାକୁ ଆରମ୍ଭ କରିଦେଲି । ନୂଆ ଅକ୍ଷର ଶିଖିଥିବା ଶ୍ରେଣ୍ଠ ପିଲା ଯେଉଁପରି ଉତ୍ସାହ ଦେଖାଇ ଏଠିସେଠି ଯାହା ପାଏ, ତାହା ପଢ଼ିବା ଲାଗି ଚେଷ୍ଟା କରିଥାଏ, ମୋର ଏହି ପଢ଼ିବାର ଚେଷ୍ଟାକୁ ପ୍ରଧାନତଃ ସେହିପରି ଏକ ଉତ୍ସାହପ୍ରସୂତ ବୋଲି କୁହାଯିବା ଉଚିତ । ପଢ଼ୁ ପଢ଼ୁ ମୁଁ ହଠାତ୍ ପ୍ରଥମ ପୃଷ୍ଠାରେ ଥିବା ସବୁ ବଡ଼ ବଡ଼ ଧାଡ଼ିକୁ ପଢ଼ିନେଇ ପାରିଲି ଓ ଦୁର୍ଭାଗ୍ୟବଶତଃ ଇଂରାଜୀରେ ସେଗୁଡ଼ିକର ଅର୍ଥ ମଧ୍ୟ ଅଧ୍ୟାପକ ମହାଶୟଙ୍କୁ କହିବାରେ ଲାଗିଲି । ହଁ, ଦୁର୍ଭାଗ୍ୟବଶତଃ—କାରଣ ତା'ପରେ କଣ ହେଲା ଶୁଣନ୍ତୁ ।

ଏହି ଆକସ୍ମିକ ସଫଳତାରେ ମୋର ମନ ଅବଶ୍ୟ ଖୁସି ହେବାର କଥା, କିନ୍ତୁ ମୋର ଖୁସିଠାରୁ ଅଧ୍ୟାପକ ମହାଶୟଙ୍କର ଖୁସି ଅନେକ ପରିମାଣରେ ବଢ଼ିଗଲା । ସେତେବେଳକୁ ମୋର ହଲାଣ୍ଡରେ ରହିବା ସାତ ଦିନ ମଧ୍ୟ ପୂରି ନ ଥାଏ । ଅଧ୍ୟାପକ ମହାଶୟ କହିଲେ, "ବାଃ, ଆପଣ ଏଇ କେଇଟା ଦିନରେ ଆମ ଭାଷାକୁ ମଧ୍ୟ ଆୟତ୍ତ

କରି ପାରିଲେଣି ।" ଆମ ଭାଷା ବୋଇଲେ ହଲଣ୍ଡ ଦେଶର ଭାଷା, ଡଚ୍ ଭାଷା । ମୋର ମନର ଭାବନାକୁ ଶ୍ରୁତିଗୋଚର କରି ମୁଁ ଉତ୍ତର ଦେଲି, "ଆପଣଙ୍କ ଭାଷାକୁ ଶିଖିବାରେ ପୁଣି ଗୋଟାଏ କଷ୍ଟ କ'ଣ ? ଡଚ୍ ଭାଷା ଯାହା, ଜର୍ମାନ୍ ଭାଷା ମଧ୍ୟ ଠିକ୍ ସେଇଆ । ଜର୍ମାନ ଭାଷା ଜାଣିଥିବା ମଣିଷକୁ ଡଚ୍‌ଭାଷା ତ ବଳେ ବଳେ ଆସିଯିବ ! କେବଳ ବନାନ୍ ଓ ଉଚ୍ଚାରଣରେ ସାମାନ୍ୟ କେତୋଟି ବିଭିନ୍ନଙ୍କୁ ଠଉରାଇ ନେଇପାରିଲେ ହେଲା !" ବଡ଼ ନିର୍ବୋଧ ମୁଁ । କାରଣ ମୁଁ ଯାହାଙ୍କ ଘରକୁ ଅତିଥି ହୋଇ ଆସିଚି, ଏପରି ଗୋଟାଏ କଥା କହିଲେ ଯେ ତାହାଙ୍କ ମନରେ କେତେ ବଡ଼ ଆଘାତ ଲାଗିବ, ମୁଁ ଆଗରୁ ସେହି କଥା ଆଦୌ ଭାବିପାରି ନ ଥିଲି । ସଜ କଟାହୋଇଥିବା ଛନଛନିଆ ମାଉଁସ ଭିତରେ ପିତ୍ତମୁଣାଟା ଫାଟିଯାଇ ପିତ୍ତ ବୋହିଗଲେ ଅବସ୍ଥା ଯାହା ହୁଏ, ସେହିପରି ସେହି ଭୋଜନାନ୍ତ ଅଳସ ପ୍ରହରର ଆଳାପ ଓ ଆନନ୍ଦ ଭିତରେ ମୋର ଏହି କଥାଗୁଡ଼ିକ ଠିକ୍ ସେହିପରି ଏକ ଅବସ୍ଥା ସୃଷ୍ଟି କରିଥିଲା । ଅଧ୍ୟାପକ ମହାଶୟଙ୍କର ଖୁସି ମୁହୂର୍ତ୍ତିକ ମଧ୍ୟରେ କୁଆଡ଼େ ଅନ୍ତର୍ହିତ ହୋଇଗଲା । ତାଙ୍କର ଗୋରା ମୁହଁଟି ବଡ଼ ବିକୃତ ଭାବରେ ରଙ୍ଗ ପଡ଼ି ଆସିଲା; କାନ, ଆଖି, ନାକ, ପାଟି ଓ ଚିବୁକ ଦୁଇଟା ଅତି ଅସୁନ୍ଦର ଓ ଅଭିଯୋଗପୂର୍ଣ୍ଣ ଭାବରେ ମୁନିଆ ହୋଇ ଆସିବା ପରି ମନେହେଲା । ଦରଦଜରଜର କଣ୍ଠରେ ସେ ଧିକ୍‌କାର ଦେଇ କହିଲେ, "ଆପଣ ଜାଣନ୍ତି—ଜର୍ମାନ୍‌ମାନେ ଆମ ଉପରେ କେତେ କେତେ ଅତ୍ୟାଚାର କରିଚନ୍ତି, ଆପଣ ଜାଣନ୍ତି—ହିଟ୍‌ଲର୍ ଏ ଦେଶର ଅଧିବାସୀମାନଙ୍କୁ କେତେ କେତେ ବିପର୍ଯ୍ୟୟର ସମ୍ମୁଖୀନ କରାଇଚି, ଆପଣ ଜାଣନ୍ତି—ଜର୍ମାନ୍‌ମାନେ ଆମକୁ କିପରି ଘୃଣା କରନ୍ତି ? ଆପଣ କଣ ଇତିହାସ ପଢ଼ିନାହାନ୍ତି ? ଅଥଚ ଆପଣ କହୁଛନ୍ତି ଯେ ଆମ ଭାଷା ଆଉ ଜର୍ମାନ୍‌ମାନଙ୍କର ଭାଷାରେ କୌଣସି ଫରକ୍ ନାହିଁ ?" ଏହିସବୁ କଥା ଶୁଣିସାରିବା ପରେ ସେତେବେଳେ ଯାଇ ମୋର ଅସତର୍କ ମନ ପୁଣି ପର ଧରିଲା । ଯାହାର ଖାଇଲି, ତାହାର ଗାଇବା ପରିବର୍ତ୍ତେ ତାର ମନଭିତରଟାକୁ ଏପରି ବିଚଳିତ କରି ପକାଇଥିବାରୁ ମୁଁ ହଠାତ୍ ବଡ଼ ଅପ୍ରସ୍ତୁତ ଅନୁଭବ କରୁଥାଏ । ସବୁ ଅତୀତ ଆଗୁଡ଼ାକୁ ସଜାଡ଼ି ଆଣିବାକୁ ଚେଷ୍ଟାକରି ମୁଁ ତତ୍‌କ୍ଷଣାତ୍ କ୍ଷମା ପ୍ରାର୍ଥନା କଲି; ସେହି ବିଷୟଟାକୁ ଭୁଲାଇ ନେବାକୁ ଆହୁରି ନାନା କଥା ପକାଇବାକୁ ଚେଷ୍ଟା କଲି । କିନ୍ତୁ ସେରି ମାଣ ସବୁ ପୂରିଲା ପିନା, ଖାଉଁଳି ପଡ଼ିଥିବା ମନ ଆଉ ସଫେଇ ହୋଇଉଠିଲା ନାହିଁ । ସତ୍ୟର ସବୁଠାରେ ଜୟ ହୁଏ, ସେହିପରି ସତ୍ୟ ତରଫରୁ ପରାଜୟ ସ୍ୱୀକାର କରି ମୁଁ ଅଧ୍ୟାପକଙ୍କଠାରୁ ବିଦାୟ ନେଇ ଆସିଲି ।

ରବୀନ୍ଦ୍ର-ଶତବାର୍ଷିକୀ ସମ୍ବନ୍ଧରେ ଏକ ପ୍ରବନ୍ଧ ଲେଖିବାକୁ ଯାଇ ଆରମ୍ଭରୁ ହିଁ ହଲଣ୍ଡରେ ଅଙ୍ଗେ ନିଭାଇଥିବା ଗୋଟିଏ ଘଟଣାର ଅବତାରଣା କରାଯିବାର ଅବଶ୍ୟ ଏକ କାରଣ ରହିଛି । ହିଟ୍‌ଲର୍ ଜର୍ମାନ୍ ସେନା ନେଇ ହଲଣ୍ଡ୍ ଅଧିକାର କରିଥିଲା ।

ହଲଣ୍ଡ୍‌ର ଲୋକଜୀବନକୁ ସେ ନାନପ୍ରକାରେ ସନ୍ତପ୍ତ ଓ ନଷ୍ଟ କରି ପକାଇଥିଲା, ଏହା ଆଧୁନିକ ଇତିହାସର ଏକ ସତ୍ୟ କଥା । କିନ୍ତୁ ଜର୍ମାନ୍ ଭାଷା ଓ ଡଚ୍ ଭାଷା ମୂଳତଃ ଦୁଇଟି ପୃଥକ୍ ଭାଷା ନୁହେଁ; ଗୋଟିଏ ଭାଷାରେ ଅଧିଗମି ପାଣ୍ଥିଲେ ଆରଟିକୁ ବୁଝିବା ଓ ପଢ଼ିବା ଯେ ଖୁବ୍ ବେଶୀ କଷ୍ଟକର ମନେହୁଏ ନାହିଁ, ଏହା ମଧ୍ୟ ଏକ ସତ୍ୟ କଥା । ହଲଣ୍ଡ୍ ଉପରେ ହିଟ୍‌ଲର୍‌ର ଅତ୍ୟାଚାରକୁ ଦାୟୀ ଦେଇ ଅଧ୍ୟାପକ ମହାଶୟ ଯେ ଜର୍ମାନ୍ ଓ ଡଚ୍ ଭାଷା ମଧ୍ୟରେ ବର୍ତ୍ତମାନ ରହିଥିବା ନିକଟ-ସମ୍ପର୍କକୁ ଲୁଚାଇବାକୁ ଚେଷ୍ଟା କଲେ, ଏଥିରେ ଭାବପ୍ରବଣତା ରହିଚି, ଏହି କଥା ମୁଁ ଅବଶ୍ୟ ସ୍ୱୀକାର କରିବି । କୃଷ୍ଣଙ୍କ ଉପରେ ଝପା ହୋଇ ଗୋପୀମାନେ କଳା-ମେଘ, କାଳିଆ ଘିତ ଓ କଳାଚକଚକ କାଳିନ୍ଦୀ ଜଳକୁ ଅସ୍ୱୀକାର କରିବା ପଛରେ ମଧ୍ୟ ଠିକ୍ ଏହିପରି ଏକ ଭାବପ୍ରବଣତା ନିହିତ ହୋଇ ରହିଥିଲା । କିନ୍ତୁ ଏହା ସତ୍ୟଂବାଗ୍ର ନୁହେଁ । ଅଧ୍ୟାପକଙ୍କର କଅଁଳ ମନର ଭାବପ୍ରବଣତାକୁ ସମସ୍ତ ପ୍ରକାର ସ୍ୱୀକୃତି ଦେଇସାରିଲେ ମଧ୍ୟ ତଥାପି ଆମକୁ ସ୍ୱୀକାର କରିବାକୁ ହେବ ଯେ ଦୁଇ ଭାଷାକୁ ଦୁଇଟା ଅଲଗା ଭାଷା ବୋଲି କହି ସେଦିନ ସେ ଆଦୌ ସତକଥା କହି ନ ଥିଲେ, ଆପଣା ମୋହମୁଗ୍ଧ ଦ୍ୱେଷାନ୍ଧ ଭୀରୁ ମନର ହିଁ ସେ ପରିଚୟ ଦେଇଥିଲେ ।

ଆଜକୁ ପ୍ରାୟ ତିରିଶ ବର୍ଷ ତଳେ ଶ୍ରୀଯୁକ୍ତ କାହ୍ନୁବାବୁ ତାଙ୍କର 'ହା ଅନ୍ନ !' ଉପନ୍ୟାସ ଲେଖିଥିଲେ । ଓଡ଼ିଶାରେ ବଙ୍ଗାଳୀମାନଙ୍କର ଅମଣିଷପଣିଆ ବିଷୟରେ ସେ ସେହି ଉପନ୍ୟାସରେ କେତେ ପୃଷ୍ଠା ବ୍ୟାପୀ ଯେଉଁ ବର୍ଣ୍ଣନା ଦେଇଛନ୍ତି, ସେହିସବୁ ବର୍ଣ୍ଣନାର ଘଟଣା ସମସ୍ତ ମଧ୍ୟ ଆଜକୁ ପ୍ରାୟ ଶହେ ବର୍ଷ ପୂରିଯିବାକୁ ବସିଲଣି । ଏହା ଭିତରେ ଭାରତବର୍ଷରେ କେତେ କେତେ ପରିବର୍ତ୍ତନ ହୋଇ-ଯାଇଚି । ଯେଉଁ ସାମ୍ରାଜ୍ୟଶକ୍ତିଠାରୁ ବଳ ପାଇ କେତେ ଜଣ ବଙ୍ଗାଳୀ ସେତେବେଳେ ଓଡ଼ିଶାଟାକୁ ଆପଣାର ଜମିଦାରୀ କରିନେବାକୁ ଆସିଥିଲେ, ସେହି ଶକ୍ତି ମଧ୍ୟ ଆଜି ଭାରତବର୍ଷରୁ ବିଦାୟ ନେଇ ଯାଇ ସାରିଲଣି । ସାରା ପୃଥିବୀରୁ ମଧ୍ୟ ସେହି ଶକ୍ତିର ଅବସାନ ହେବାକୁ ଆଉ ବେଶି ବେଳ ବାକି ନାହିଁ ବୋଲି କହିଲେ ଆଦୌ ଭୁଲ ହେବ ନାହିଁ । ଏହାରି ଭିତରେ ଓଡ଼ିଶା ମଧ୍ୟ ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇଚି । ସ୍ୱାଧୀନ ଭାରତର ପୁନର୍ଗଠନ ଅନୁସାରେ ଓଡ଼ିଶାର ମୋଗଲବନ୍ଦୀ ଆଉ ଗଡ଼ଜାତ ମିଶି ଏକ ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହୋଇଛି । ଓଡ଼ିଶା ରାଜ୍ୟର ଶାସନ, ନିର୍ମାଣ ତଥା ଉନ୍ନୟନ ବର୍ତ୍ତମାନ ସମ୍ପୂର୍ଣ୍ଣଭାବରେ ଓଡ଼ିଶାବାସୀଙ୍କ ହାତରେ । ତଥାପି ଏଠାରେ କହିବାକୁ ପଡ଼ିବ ଯେ ପଚାଶ ବର୍ଷ ତଳେ କାହ୍ନୁବାବୁ ସାଧାରଣ ଭାବରେ ବଙ୍ଗାଳୀମାନଙ୍କ ପ୍ରତି ଯେଉଁପରି ମନୋବୃତ୍ତି ପ୍ରକଟ କରିଥିଲେ, ବର୍ତ୍ତମାନ ମଧ୍ୟ ଓଡ଼ିଶାର ଅଧିକାଂଶ ଅଧିବାସୀଙ୍କ ମନରେ ବଙ୍ଗାଳୀମାନଙ୍କ ପ୍ରତି ପ୍ରଧାନତଃ ସେହିପରି ଏକ ମନୋବୃତ୍ତି ରହିଚି । ଓଡ଼ିଶାର ଭୂଗସୀମା ବାହାରେ

ବାସ କରୁଥିବା ଅଧିବାସୀମାନଙ୍କ ପ୍ରତି ଆମ ଓଡ଼ିଶାବାସୀଙ୍କର ଏକ ଆତ୍ମପୀଡ଼ନ ଆତଙ୍କ ଦୃଷ୍ଟି ହିଁ ରହିଛି । ଆପଣା ବିଷୟରେ ଏକ ଅନ୍ତର୍ଗତ ହୀନ ଭାବକୁ ମନୋବୈଜ୍ଞାନିକମାନେ ଏହି ଆତଙ୍କ ବା ଭୀତିରୋଗର ପ୍ରଧାନ କାରଣ ବୋଲି ନିର୍ଣ୍ଣୟ କରି ଦେଇଥାନ୍ତି । ଭିତରେ ମୁଁ ଆପଣାକୁ ହୀନ ବୋଲି ମନେକରେ । ତେଣୁ ଅପରକୁ ମୁଁ ମୋ'ଠାରୁ ବଡ଼ ବୋଲି ଭୟ କରେ । ସେହି ହୀନଭାବ-ପ୍ରଣୋଦିତ ଭୟ ବାହାର ଜୀବନରେ ମୋର ଭାବପ୍ରବଣତାର ମଧ୍ୟ ପାଇ ଉଗ୍ର ଦ୍ୱେଷରେ ପରିଣତ ହୁଏ । ଏହା ନାନାପ୍ରକାର ଅସ୍ୱୀକାର ଓ ଅବଜ୍ଞାରେ ଆତ୍ମ-ପ୍ରକାଶ କରିଥାଏ । ଅନ୍ୟଠାରେ କୌଣସି ଭଲକଥା ଥିଲେ ତାହାକୁ ସୁସ୍ଥରୂପେ ଗ୍ରହଣ କରିବା ଏବଂ ଆପଣା ଭିତରେ ରହିଥିବା କୌଣସି ବିତରଣଯୋଗ୍ୟ ଗୁଣକୁ ଅନ୍ୟପାଖରେ ସୁସ୍ଥରୂପେ ବାଢ଼ି ଦେଇପାରିବା ଆଉ ମୋ' ଦ୍ୱାରା ସମ୍ଭବ ହୋଇ-ପାରେ ନାହିଁ । ଆମ ଓଡ଼ିଶାରେ ଆମର ସମସ୍ତ ଉଗ୍ର ବିଦ୍ୱେଷ ଓ ଗର୍ଜନ ପଛରେ ଏହିପରି ଗୋଟାଏ ରୋଗ ଲୁଚିକରି ରହିନାହିଁ ତ ? ସଂସ୍କୃତିର ନାଡ଼ୀ ଦେଖି ଜାଣୁଥିବା ବୈଦ୍ୟମାନେ ହୁଏତ ଏହି ରୋଗର ନିଦାନ ଖୋଜି ବାହାର କରି-ପାରିବେ । କିନ୍ତୁ ପଡ଼ୋଶୀ ଓ ପଡ଼ୋଶୀ ଭିତରେ ଯେତେ ଦୂର ସୁଗମତା ଓ ସହଜ ଅଧିଗମ୍ୟତା ରହିବା ଉଚିତ, ଓଡ଼ିଆ ଆଉ ବଙ୍ଗାଳୀମାନଙ୍କ ମଧ୍ୟରେ ସେହି ଅଧିଗମ୍ୟତା ଆଜି ନାହିଁ । ଗୋଟାଏ ପ୍ରକାର ଅପ୍ରୀତିକର ସ୍ତବ୍ଧତା କଣ୍ଠ ପରି ହୋଇ ଆମର ମୁହଁକୁ ଅତିଶୟ ମ୍ଳାନ କରି ରଖିଛି । ଏକପ୍ରକାର ଅସଚେତ ଆତ୍ମପୀଡ଼ନ ଆମକୁ ଆପଣା ଉଗ୍ରତାର ବିଷରଜ୍ଜୁରେ ବାନ୍ଧିକରି ରଖିଛି, ଏହିକଥା ଶୁଣିବାକୁ ଅପ୍ରିୟ ଲାଗିପାରେ; କିନ୍ତୁ ଏହାକୁ ମୁଁ ଏକ ସତ୍ୟକଥା ବୋଲି ସ୍ୱୀକାର କରିବାକୁ ବାଧ୍ୟ ହେଉଛି ।

ଭାଷାବିତ୍‌ମାନେ କହିବେ—ଓଡ଼ିଆ, ବଙ୍ଗଳା ଆଉ ଆସାମୀଭାଷା ପ୍ରାକୃତ-ଭାଷାର ଗୋଟିଏ ଶାଖାରୁ ହିଁ ଉଦ୍‌ଭୂତ ହୋଇଛନ୍ତି । ପନ୍ଦର ବର୍ଷ ତଳେ ଆସାମ ଯାଇଥିବାବେଳେ ଆସାମୀ ରାମାୟଣ ପଢ଼ି ହଠାତ୍ ତାହା ଓଡ଼ିଆଭାଷାରେ ଲେଖା ହୋଇଛି ବୋଲି ମୋର ଭ୍ରମ ହୋଇଥିଲା । ଆଗେ କୌଣସି ଓଡ଼ିଶୀ ରାଜା ସୈନ୍ୟବଳ ନେଇ ଆସାମ ଜୟ କରି ଯାଇଥିଲେ ବୋଲି ଯେ ଆସାମୀ ଓ ଓଡ଼ିଆଭାଷା ମଧ୍ୟରେ, ବିଶେଷତଃ ପୁରାତନ ଓଡ଼ିଆ ଓ ପୁରାତନ ଆସାମୀଭାଷା ମଧ୍ୟରେ ଏପରି ସାମଞ୍ଜସ୍ୟ ରହିଛି, ତାହା ନୁହେଁ । ଦୁଇ ଭାଷା ଗୋଟିଏ ଶାଖାର ଦୁଇ ପ୍ରଶାଖା ବୋଲି ଏପରି ସାମଞ୍ଜସ୍ୟ ରହିଛି । ଗତ କେତେ ଶହ ବର୍ଷ ଧରି ଭୌଗୋଳିକ ଦୂରତାଦ୍ୱାରା ପରସ୍ପରଠାରୁ ବିଚ୍ୟୁତ ହୋଇ ହୁଏତ ଆଧୁନିକ ଓଡ଼ିଆ ଆଧୁନିକ ଆସାମୀଠାରୁ ବେଶି ଦୂରଛଡ଼ା ହୋଇ ଯାଇଥିବା ପରି ମନେ ହେଉଛି । ଆସାମୀ ଉପରେ ମଙ୍ଗୋଲୀୟ ପ୍ରଭାବ ପଡ଼ିଛି । ଓଡ଼ିଆ ଭାଷା ଉପରେ ମଧ୍ୟ ଦ୍ରାବିଡ଼ ଓ ଅନ୍ୟାନ୍ୟ ଆର୍ଯ୍ୟେତର ଭାଷାର ପ୍ରଭାବ ପଡ଼ିଛି ।

ଭାଷାଠାରୁ ଭାବରେ ମୋର ବେଶୀ ଶ୍ରଦ୍ଧା; ଭୌଗୋଳିକତା ଅପେକ୍ଷା ଭିତରଟାକୁ ଅଧିକ ଦେଖିବାକୁ ମୁଁ ମନୁଷ୍ୟର ସମୀପବର୍ତ୍ତୀ ହୋଇଥାଏ । ଇଂରାଜୀ ଭାଷା ପ୍ରତି ମୋର କୌଣସି ମୋହ ଅଛି ବୋଲି ମୁଁ କର୍ତ୍ତବ୍ୟ-ଅନୁରୋଧରେ ସେକ୍‌ସପିୟର୍ ପଢ଼ିବାକୁ ଯାଏ ନାହିଁ । ସେକ୍‌ସପିୟର୍ ପରିବେଷଣ କରିଥିବା ସାହିତ୍ୟର ଥାଳକୁ ହାତ ବଢ଼ାଇବାର ଅଧିକାର ପାଇବା ଲାଗି ମୁଁ ଅତ୍ୟାବଶ୍ୟକ ମନେକରି ଇଂରାଜୀ ଭାଷା ଶିଖେ । ଇଂରାଜୀ ଭାଷାକୁ ଭଲ ପାଏ । ଗଙ୍ଗାଧର ମେହେର ଓଡ଼ିଶାର କବି ବୋଲି ମୁଁ ତାହାଙ୍କୁ ପଢ଼ିବାକୁ ମନ ବଳାଇ ଆପଣା ଅହଂବୃତ୍ତିର ସମ୍ପ୍ରସାରଣ କରିବାକୁ ମନ ବଳାଏ ନାହିଁ । ଗଙ୍ଗାଧର ମେହେରଙ୍କର ତପସ୍ୟା ଭୂମିରେ ବିଚରଣ ସୌଭାଗ୍ୟ ଲାଭ କରିବାକୁ ମୁଁ ତାଙ୍କୁ ଅଧ୍ୟୟନ କରିବା ଲାଗି ପ୍ରସ୍ତୁତ ହୁଏ । ମୋ ଲାଗି ରବୀନ୍ଦ୍ରନାଥ ପ୍ରଥମେ କବି, ପ୍ରଥମେ ଜଣେ ଦୃଷ୍ଟିସମ୍ପନ୍ନ ପୁରୁଷ, ପଥପ୍ରଦର୍ଶକ—ତାପରେ ସେ ବଙ୍ଗାଳୀ । ତାଙ୍କ ପାଖରେ ପହଞ୍ଚିବାକୁ ହେଲେ ମୋତେ ବଙ୍ଗଭାଷା ଓ ସାହିତ୍ୟର ଦେହୁଡ଼ି ଦୁଆର ପାରହୋଇ ଆସିବାକୁ ପଡ଼ିବ, ସେଥିପାଇଁ ମୁଁ ବଙ୍ଗଭାଷା ପ୍ରତି ଆଗ୍ରହ ଦେଖାଇଥାଏ । ରବୀନ୍ଦ୍ରନାଥ ବଙ୍ଗାଳୀ, ଏହା ତାଙ୍କର ଏକ ଆକସ୍ମିକ ପରିଚୟ ମାତ୍ର । ରବୀନ୍ଦ୍ରନାଥଙ୍କର ସୃଜନମୟ ଜୀବନ ଓ ସୃଜନମୟ ଅବଦାନ ହେଉଛି ତାଙ୍କର ଅସଲ ପରିଚୟ । ଗତ ଶତାବ୍ଦୀର ଶେଷ ଆଡ଼କୁ ଓଡ଼ିଶାବାସୀଙ୍କର ସାଧାରଣତଃ ଯେଉଁ ଦୃଷ୍ଟିବିକାର ରହିଛି, ସେଥିରୁ ମୁକ୍ତହୋଇ ପାରିଲେ ଯାଇ ଆମେ ରବୀନ୍ଦ୍ରନାଥଙ୍କୁ ତାଙ୍କର ପରିପୂର୍ଣ୍ଣ ପରିଚୟରେ ସାକ୍ଷାତ କରିବାର ଅବସର ପାଇପାରିବା ।

ରବୀନ୍ଦ୍ରନାଥଙ୍କର ସବୁଠାରୁ ଅଧିକ ବିଶିଷ୍ଟ ଦାନ ହେଉଛି ତାଙ୍କର ସର୍ବ-ଭାରତୀୟ ଦୃଷ୍ଟି, ସମଗ୍ରଭାବରେ ଦେଖିଲେ ଏହାହିଁ ହେଉଛି ସର୍ବମାନବୀୟ ଦୃଷ୍ଟି । ମୂଳତଃ ଭାରତର ସଂସ୍କୃତିରେ ସର୍ବଭାରତୀୟ ଓ ସର୍ବମାନବୀୟ ଦୃଷ୍ଟି ଭିତରେ କୌଣସି ଅସଙ୍ଗତି ନାହିଁ । କାରଣ ଭାରତର ସଂସ୍କୃତି କଦାପି ଆପଣାକୁ ଏକ ଭୌଗୋଳିକ ବା କ୍ଷେତ୍ରୀୟ ସୀମାରେଖା ମଧ୍ୟରେ କ୍ଷୁଦ୍ର କରି ଦେଇ ନାହିଁ । ଏହି ଦେଶର ପ୍ରାଚୀନ ଅରଣ୍ୟ ଓ ପ୍ରାଚୀନ ଆଶ୍ରମରେ ଯେଉଁ ଦର୍ଶନର ବିଚାର କରାଯାଇଛି, ତାହା ଖାସ୍‌କରି କୌଣସି ଜାତି ବା କୌଣସି ଧର୍ମକୁ ବଡ଼ ବୋଲି କହି ଆଉ କୌଣସି ଜାତି ବା ଧର୍ମକୁ ଶ୍ରେଷ୍ଠ ବୋଲି କହିବାର ପ୍ରସ୍ତାବ ଦେଇ ନାହିଁ । ଏ ଦେଶର ଧର୍ମଶାସ୍ତ୍ରରେ ଯେଉଁ ଉପାସନା ଓ ଉପଲବ୍ଧିର ଚର୍ଚ୍ଚା ହୋଇଛି, ସେଥିରେ କୌଣସି ପ୍ରକାର ଖଣ୍ଡିତତାର ଗନ୍ଧ ନାହିଁ । ଆମ ଦେଶର ଉପନିଷଦରେ ସବୁ ଦେବତା ଓ ପ୍ରତିମାକୁ ପାରହୋଇ ଭୂମା ବା ସମଗ୍ରତାର ସ୍ତୁତିଗାନ କରାଯାଇଛି । ଅଳ୍ପରେ ନୁହେଁ, କେବଳ ଭୂମାରେ ହିଁ ସୁଖ ନିହିତ ରହିଛି; ଏହାହିଁ ହେଉଛି ଉପନିଷଦର ଉକ୍ତି । ଉପନିଷଦର ଈଶ୍ୱର କେବଳ ସ୍ୱର୍ଗରେ ନାହାନ୍ତି, ସେ ଏହି ଆକାଶ ବ୍ୟାପି ରହିଛନ୍ତି । ସେ ଏହି ବିଶ୍ୱରେ ବ୍ୟାପ୍ତ ହୋଇ ରହିଛନ୍ତି, ସେ

ମୋର ଅନ୍ତର ଭିତରେ ଅଛନ୍ତି । ଯିଏ ବିଶ୍ୱକର୍ମା, ଯିଏ ମହାତ୍ମା, ସେହି ପୁଣି ସର୍ବଜନର ହୃଦୟ ଭିତରେ ହିଁ ପ୍ରତିଷ୍ଠିତ ରହିଛନ୍ତି । ଈଶ୍ୱରଙ୍କର ଆକାର ଓ ପ୍ରକାର ନିର୍ଣ୍ଣୟ କରିବାକୁ ଯାଇ ମସ୍ତିଷ୍କବାଦୀ ତଥ୍ୟାଲୋଚନା କରୁଥିବା ପଣ୍ଡିତମାନେ ଏହି ବିଶ୍ୱାସକୁ ଖାଲି ଅସଙ୍ଗତ ବୋଲି କହିବା ଆଦୌ ବିଚିତ୍ର ନୁହେଁ; କିନ୍ତୁ ତଥାପି ଏହା ହିଁ ଭାରତର ବିଶ୍ୱାସ । ଭାରତୀୟ ବିଶ୍ୱାସ ମସ୍ତିଷ୍କପ୍ରସୂତ ନୁହେଁ, ଉପଲବ୍ଧିପ୍ରସୂତ । ଅବିଶ୍ୱାସୀମାନଙ୍କୁ ବିଶ୍ୱାସରେ ଦୀକ୍ଷିତ କରି ବା ଗଛ ଓ ପଥରପୂଜା କରୁଥିବା ଅପାଂକ୍ତେୟମାନଙ୍କୁ ଧର୍ମମନ୍ଦିରର ପଂକ୍ତିଭିତରକୁ ଅଣାଇଆଣି ଭାରତୀୟ ବିଶ୍ୱାସ କଦାପି ଏକ ଧର୍ମସାମ୍ରାଜ୍ୟ ସ୍ଥାପନା କରିବାର ଭ୍ରମ କରି ନାହିଁ । ଧର୍ମସାମ୍ରାଜ୍ୟ ଅନ୍ତର ଭିତରେ ହିଁ ପ୍ରତିଷ୍ଠିତ ହେବ । ଆପଣାର ଦୃଷ୍ଟିକୁ ଉନ୍ମୋଚିତ କରି ସମଗ୍ରଟିକୁ ଆପଣାଭିତରେ ଧରି ରଖିବାକୁ ହେବ । ସବୁ ଅନ୍ଧାରକୁ ଭେଦ କରି ଆଦିତ୍ୟବର୍ଣ୍ଣ ମହାନ୍ ପୁରୁଷଙ୍କୁ ଜାଣିଲେ ଧର୍ମସାଧନା ସଫଳ ହେବ । ନାନ୍ୟଃ ପନ୍ଥା ବିଦ୍ୟତେ ଅୟନାୟ ।

ରବୀନ୍ଦ୍ରନାଥଙ୍କ ମଧ୍ୟରେ ଆମେ ସବୁଠାରେ ଏହି ଦୃଷ୍ଟି ହିଁ ଦେଖିବାକୁ ପାଇବା । ସେ ବଙ୍ଗଳା ଦେଶକୁ ଭଲ ପାଆନ୍ତି, ତଥାପି ଏହି ଭଲପାଇବା ତାଙ୍କୁ ସମଗ୍ର ଜଗତକୁ ଭଲପାଇବାରୁ ବଞ୍ଚିତ କରି ରଖେ ନାହିଁ । ବଙ୍ଗଦେଶର ମାଟି ଓ ବଙ୍ଗଦେଶର ପାଣି ଧନ୍ୟ ହେଉ ବୋଲି ସେ ଭଗବାନଙ୍କୁ ପ୍ରାର୍ଥନା କରନ୍ତି; କିନ୍ତୁ ତାଙ୍କର ସେହି ପ୍ରାର୍ଥନା ତାଙ୍କୁ ସମଗ୍ର ବସୁନ୍ଧରାର ସମଗ୍ର ମାଟି ଓ ସମଗ୍ର ପ୍ରକୃତି ସହିତ ଆତ୍ମୀୟତା ଅର୍ଜନ କରିବାରୁ ଆଦୌ ବଞ୍ଚିତ କରିପାରେ ନାହିଁ । ଭାରତବର୍ଷର ବନ୍ଦନା କରିବାକୁ ଯାଇ ସେ ସଂସାରର ଅନ୍ୟ ସମସ୍ତ ଦେଶଠାରୁ ଭାରତବର୍ଷକୁ ବଡ଼ ବୋଲି ଦେଖାଇବାର କୌଣସି ଇଙ୍ଗିତ ଦେଇନାହାନ୍ତି । ଭାରତବର୍ଷ ହେଉଛି ବିଶ୍ୱମାନବ ଓ ବିଶ୍ୱସଂସ୍କୃତିର ମିଳନଭୂମି । ଏହି ଭୂମିରେ ଜନଗଣର ଭାଗ୍ୟବିଧାତା ଲାଗି ପ୍ରେମର ଦ୍ୱାର ଖୋଲାହେଉଛି, ଏହିଠାରେ ସବୁ ମନୁଷ୍ୟର ଆତ୍ମଗତ ଐକ୍ୟ ଘୋଷିତ ହେଉଛି, ଏଥିଲାଗି ବିଶ୍ୱନିୟନ୍ତାଙ୍କ ପାଖରେ ଆପଣା ପ୍ରସନ୍ନ ମନର କୃତଜ୍ଞତା ଜ୍ଞାପନ କରି ହିଁ ରବୀନ୍ଦ୍ରନାଥ ଆପଣାର ପରମ କର୍ତ୍ତବ୍ୟ ସମାପନ କରିଛନ୍ତି । ତାଙ୍କର ଭଗବାନ କୌଣସି ଜାତିର ପୋଷା, ଭୋଗଖିଆ ଓ ବୋଲକରା ଭଗବାନ ନୁହନ୍ତି । ଏହା ସବୁ ଜାତିର ସବୁ କଳ୍ପନାର ଅନେକ ଉପରେ, ସବୁ ମୂର୍ତ୍ତିର ଅନେକ ଉପରେ । କୌଣସି ପ୍ରକାର ସାମ୍ପ୍ରଦାୟିକ ଧର୍ମଯୁଦ୍ଧରେ ଉନ୍ମତ୍ତ ହେଲେ ଏହି ଭଗବାନ କଦାପି ପ୍ରସନ୍ନ ହୁଅନ୍ତି ନାହିଁ । ଅଥଚ ମନୁଷ୍ୟ ପ୍ରସ୍ତୁତ ହୋଇପାରିଲେ ଏହା ପ୍ରତ୍ୟେକ ମନୁଷ୍ୟର ଦୃଷ୍ଟି ଭିତରେ ଆସି ଧରାଦିଅନ୍ତି, ପ୍ରତ୍ୟେକ ମନୁଷ୍ୟର ଭଲପାଇବା ଭିତରେ ଆସି ଧରାଦିଅନ୍ତି । ବିଶ୍ୱାସ ଓ ପ୍ରେମକୁ ଛାଡ଼ି କାନ୍ଥ ଦେଇ ବାନ୍ଧିରଖିଲେ ମନୁଷ୍ୟର ଅହଙ୍କାରଟା ହିଁ ଭଗବାନର ଅବତାର ହୋଇ ବସିରହେ; କିନ୍ତୁ ସ୍ୱୟଂ ଭଗବାନ ସେଠାରୁ ଅନ୍ତର 'ହୋଇଯାଆନ୍ତି ।

ପ୍ରାଚୀନ ଉପନିଷଦ ଓ ପ୍ରାଚୀନ ଭାରତୀୟ ସଂସ୍କୃତିରୁ ରବୀନ୍ଦ୍ରନାଥ ଅନେକ ପ୍ରେରଣାମୟ ଉପାଦାନ ପାଇଛନ୍ତି । ଏହି ସତ୍ୟଟିକୁ ଅବଶ୍ୟ ସ୍ୱୀକାର କରିବାକୁ ହେବ । କିନ୍ତୁ କେବଳ ଏହି ଭାରତୀୟ ପ୍ରାଚୀନତା ଯେ ରବୀନ୍ଦ୍ରନାଥଙ୍କୁ ତିଆରି କରିଛି, ଏପରି କହିଲେ ଆମେ ଭାରି ଭୁଲ କରିବସିବା । ପ୍ରାଚୀନ ଭାରତୀୟ ଦୃଷ୍ଟିର ମହାନତାକୁ ଚିହ୍ନି ରବୀନ୍ଦ୍ରନାଥ ତାହାକୁ ଆପଣାର ସାହିତ୍ୟ ଓ ଆପଣାର ଜୀବନ ଭିତରେ ପ୍ରତିଭାତ କରିପାରିଛନ୍ତି । ଉପନିଷଦ ପଢ଼ିଥିବା ପଣ୍ଡିତ ଆମ ଦେଶରେ ଅନେକ ଅଛନ୍ତି । ନାନା ଧର୍ମ ଓ ଦର୍ଶନଶାସ୍ତ୍ରର ନାନା ଭାଷ୍ୟକୁ ମୁଖସ୍ଥ କରି ରଖିଥିବା ଅନେକ ଚତୁର୍ବେଦୀ ଓ ପଞ୍ଚତୀର୍ଥ ରହିଛନ୍ତି । କିନ୍ତୁ ସକଳ ପାଣ୍ଡିତ୍ୟ ସତ୍ତ୍ୱେ ସେମାନଙ୍କ ମଧ୍ୟରେ ରବୀନ୍ଦ୍ରନାଥଙ୍କର ଉଦାର ଦୃଷ୍ଟି ସମ୍ଭବ ହୋଇପାରି ନାହିଁ । ସେମାନଙ୍କର ଅଧ୍ୟୟନ ସେମାନଙ୍କୁ ଆତ୍ମକେନ୍ଦ୍ରିକ କରି ବାନ୍ଧି ରଖିଛି, ସେମାନଙ୍କୁ ବଦ୍ଧରରେ ଘାଣ୍ଟି କରି ରଖିଛି । କିନ୍ତୁ ରବୀନ୍ଦ୍ରନାଥଙ୍କର ଗତିଶୀଳ ଓ ବିକାଶଧର୍ମୀ ଜୀବନଦୃଷ୍ଟି—ଏହିସବୁ ଗ୍ରନ୍ଥଭିତରେ ଆପଣାଲାଗି ପଥ ପାଇଛି, ନାନାପ୍ରକାର ଅତୀତକୁ କାଟି ଆଗକୁ ଯିବା ଲାଗି ପ୍ରେରଣା ପାଇଛି । 'ଯଃ ପଶ୍ୟତି ସ ପଶ୍ୟତି'—କେନୋପନିଷଦର ଏହି ଆପ୍ତବାକ୍ୟରେ ଉପଲବ୍ଧିର ବ୍ୟକ୍ତିପ୍ରଧାନତାକୁ ଦର୍ଶାଇଦେଇ ଋଷି ଆମକୁ କେବଳ ଶାସ୍ତ୍ରାଧ୍ୟୟନ କରିବାର ପ୍ରମାଦ ବିଷୟରେ ବୋଧହୁଏ ଚେତାଇ ଦେବାକୁ ଚେଷ୍ଟା କରିଛନ୍ତି । ମୁଣ୍ଡକୋପନିଷଦ (୨।୩)ରେ ଶାସ୍ତ୍ରବାସନାକୁ ଏକ ପ୍ରମାଦ ବୋଲି କୁହାଯାଇଛି । ଶାସ୍ତ୍ର ସବୁରି ଆଗରେ ସମାନଭାବରେ ଆତ୍ମପ୍ରକାଶ କରେ ନାହିଁ । ଯିଏ ଯେତିକି ଗ୍ରହେ, ଯିଏ ସେତିକି ପାଇ ଅଟକିଯାଏ, ବାନ୍ଧିହୋଇ ଥାଏ । ରବୀନ୍ଦ୍ରନାଥଙ୍କର ଗ୍ରହିବା ଅନୁସାରେ ତାଙ୍କୁ ସେତିକି ଗଭୀର ତଳର ପରିଚୟ ମିଳିଛି । ଶାସ୍ତ୍ରଭିତରେ ପ୍ରବେଶ କରି ସେ ଶାସ୍ତ୍ରର ବନ୍ଧ ଭାଙ୍ଗିଦେଇ ପାରିଛନ୍ତି । ପ୍ରାଚୀନ ଶାସ୍ତ୍ର ତାଙ୍କର ଦୃଷ୍ଟିଭିତରେ ନୂତନ ଜୀବନପ୍ରେରଣା ହୋଇ ଜନ୍ମଲାଭ କରିଛି । ବିଦ୍ୟାରେ ପ୍ରବେଶ କରି ସେ ବିଦ୍ୟାର ବନ୍ଧନରୁ ବିମୁକ୍ତ ହୋଇ ପାରିଛନ୍ତି ।

୧୯୦୧ ମସିହାରେ ରବୀନ୍ଦ୍ରନାଥ ଶାନ୍ତିନିକେତନରେ ଛଅ ଜଣ ଛାତ୍ରଙ୍କୁ ନେଇ ଗୋଟିଏ ବିଦ୍ୟାଳୟ ଆରମ୍ଭ କରିଥିଲେ । ମାତ୍ର ଛଅ ଜଣ ଛାତ୍ରଙ୍କୁ (ଆପଣା ସନ୍ତାନଟି ସମେତ) ନେଇ ସହରଠାରୁ ଦୂରରେ ସେ ଗୋଟିଏ ବିଦ୍ୟାଳୟ ସ୍ଥାପନ କରିଛନ୍ତି ବୋଲି କହିବାକୁ ସେତେବେଳେ ହୁଏତ ତାଙ୍କୁ ମଧ୍ୟ ଭାରି ସଙ୍କୋଚ ବୋଧ ହୋଇଥିବ । ଅନ୍ୟମାନେ ତ ଠାପରି କରିବାର ହିଁ କଥା । ସବୁସମୟରେ ବାଟରୁ ଟିକିଏ ବାହାରକୁ ବାହାରିଯାଇ ଯିଏ ନୂଆକରି କିଛି ଆରମ୍ଭ କରେ, ସମାଜରେ ଥିବା ଅନ୍ୟମାନେ ସ୍ୱଭାବତଃ ତାହାକୁ ହସି ଉଡ଼ାଇଦେବାକୁ ଚେଷ୍ଟା କରିବାର ହିଁ କଥା । ଏହିପରି ଏକ ଚେଷ୍ଟା କରି ପୁରାତନ ନୂତନର ଆଘାତରୁ ଆପଣାକୁ ବଞ୍ଚାଇ ରଖିବାକୁ ଚେଷ୍ଟା କରିଥାଏ । ଆପଣାର ବିଦ୍ୟାଳୟଟି ଲାଗି ରବୀନ୍ଦ୍ରନାଥଙ୍କୁ ସେ କେତେ

ବାଧାବିଘ୍ନ ଅତିକ୍ରମ କରିଯିବାକୁ ପଡ଼ିଛି । ଆମେ ବିଭିନ୍ନ ପୁସ୍ତକରେ ସେହି କଥା ପଢ଼ିବାକୁ ପାଇଥାଉ । ଶାନ୍ତିନିକେତନର ସେହି ବିଦ୍ୟାଳୟ ୧୯୨୧ ମସିହାଠାରୁ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଛି, ସ୍ୱାଧୀନ ଭାରତର ସରକାର ଏହାର ପରିଚାଳନାର ଭାର ବର୍ତ୍ତମାନ ଆପଣା ହାତକୁ ନେଇଛନ୍ତି । ରବୀନ୍ଦ୍ରନାଥଙ୍କ ଅନ୍ତେ ରବୀନ୍ଦ୍ରନାଥଙ୍କ ଅଭାବରେ ବିଶ୍ୱଭାରତୀ ଅବଶ୍ୟ ନାନାଭାବରେ ଅପୂର୍ଣ୍ଣ ଓ ଅଭାବଗ୍ରସ୍ତ ହୋଇପଡ଼ିବାର କଥା । ବିଶ୍ୱଭାରତୀ ବର୍ତ୍ତମାନ ଠିକ୍ ଏହି କଥା ହିଁ ଅଙ୍ଗେ ନିଭାଇଛି । କିନ୍ତୁ ଏହାର କଳେବର କ୍ରମଶଃ ବୃଦ୍ଧି ପାଉଛି, ଦେଶବାସୀ ଓ ଜଗତ୍‌ବାସୀଙ୍କଠାରୁ ଏହା ଦିନକୁଦିନ ଅଧିକ ସ୍ୱୀକାର ପାଉଛି, ଏଥିରେ ସନ୍ଦେହ କରିବାର କୌଣସି ଅବକାଶ ନାହିଁ ।

ପ୍ରଚଳିତ ଶିକ୍ଷାବ୍ୟବସ୍ଥାରେ କ'ଣସବୁ ଅଭାବ ଦେଖାଇ ଶାନ୍ତିନିକେତନ ଜନ୍ମଲାଭ କରିଥିଲା । ସେହିସବୁ ଅଭାବାତ୍ମକ ଯୁକ୍ତି ଦେଖାଇବା ମୋର ଉଦ୍ଦେଶ୍ୟ ନୁହେଁ । ପୁରୁଣାର ଶୂନ୍ୟକୁ ପୂର୍ଣ୍ଣ କରିବାକୁ ହିଁ ନୂତନର ଜନ୍ମ ହୋଇଥାଏ । ତଥାପି ଗତ ପଚିଶବର୍ଷ ଭିତରେ ଶାନ୍ତିନିକେତନ ଓ ବିଶ୍ୱଭାରତୀ ଆପଣାର କି କି ବୈଶିଷ୍ଟ୍ୟ ପରିଚୟ ଦେଇପାରିଛି, ଏଠାରେ କେବଳ ତାହାର ଉଲ୍ଲେଖ କଲେ ହିଁ ଯଥେଷ୍ଟ ହେବ ବୋଲି ମୁଁ ବିଚାର କରୁଛି । ଭାରତୀୟ ଧର୍ମ ଓ ଦର୍ଶନ, ଭାରତୀୟ ସାହିତ୍ୟ, ଭାରତୀୟ କଳା ଏବଂ ଭାରତୀୟ ନୃତ୍ୟ ଓ ସଙ୍ଗୀତର ଅଧାପନା ଓ ଅନୁସନ୍ଧାନ ଲାଗି ବିଶ୍ୱଭାରତୀ ଭାରତବର୍ଷରେ ଏକ ଅଦ୍ୱିତୀୟ ସ୍ଥାନରେ ପରିଣତ ହୋଇପାରିଛି । ଚୀନ, ତିବ୍ଦତୀ ଓ ଆହୁରି ଅନେକ ଭାଷାର ଚର୍ଚ୍ଚା ଲାଗି ଏଠାରେ ଏକ ପ୍ରଶସ୍ତ ପରିସର ସୃଷ୍ଟି ହୋଇପାରିଛି । କୌଣସି ଗୋଟିଏ ଧର୍ମକୁ ବଡ଼ ବୋଲି ନ କହି ମତନିର୍ବିଶେଷରେ ମନୁଷ୍ୟର ଧର୍ମନିଷ୍ଠା ଓ ଧର୍ମବାସନାକୁ ହିଁ ଏଠାରେ ଉଚ୍ଚତମ ବୋଲି ସ୍ୱୀକାର କରାଯାଇଛି । ରବୀନ୍ଦ୍ରନାଥ ତାଙ୍କର 'ମନୁଷ୍ୟଧର୍ମ' ଗ୍ରନ୍ଥରେ ସମସ୍ତ ଆବରଣଭେଦ ଅତିକ୍ରମ କରି ଯେଉଁ ସାରଧର୍ମର ସନ୍ଧାନ କରିଥିଲେ, ତାହା ହିଁ ଶାନ୍ତିନିକେତନର ପ୍ରାଣକୁ ସତତ ସମୃଦ୍ଧ କରି ରଖିଛି । ଧର୍ମ ଅଲଗା କରି ଦେବ ନାହିଁ, ଧର୍ମ ବାନ୍ଧି କରି ରଖିବ ନାହିଁ—ଧର୍ମ ସଂଯୋଜିତ କରିବ, ଧର୍ମ ଖିଅ ଲଗାଇଦେବ । ନାନା ଘୃଣା ଓ ଦ୍ୱେଷରେ ପରସ୍ପରଠାରୁ ବିମୁଖ ହୋଇ ନ ଯାଇ ମନୁଷ୍ୟ ପରସ୍ପରର କଳା, ସାହିତ୍ୟ ଓ ସଙ୍ଗୀତ କରିଆରେ ପରସ୍ପରକୁ ଚିହ୍ନିବ, ପରସ୍ପରଠାରୁ ଗ୍ରହଣ କରିବ ଓ ପରସ୍ପରକୁ ଦାନ କରିବ—ଶାନ୍ତିନିକେତନର ବିଶ୍ୱବିଦ୍ୟାଳୟ ଏହି ସହଜ ସମ୍ମିଳନର ଏକ ସୁନ୍ଦର ବିଶ୍ୱ ସ୍ଥାପନା କରିବାରେ ଅଗ୍ରଣୀ ହୋଇ ବାହାରିଛି । ସମସ୍ତେ ହିନ୍ଦୁ ହୋଇଗଲେ ବା ସମସ୍ତେ କମ୍ୟୁନିଷ୍ଟ ହୋଇଗଲେ ଶାନ୍ତିପ୍ରତିଷ୍ଠା ହେବ ବୋଲି ଯେଉଁମାନେ ଦିବାସ୍ୱପ୍ନ ଦେଖନ୍ତି, ସେମାନେ କେବଳ ଆପଣାର ହିଁ ବଡ଼ିମା ଗୃହାନ୍ତି, ସେମାନଙ୍କର ଅତୃପ୍ତିଜର୍ଜର ମନଟା କେବଳ କ୍ଷମତା ପାଇବ ବୋଲି ହିଁ ଲାଳସୀ ହୋଇ ବାହାରିଥାଏ । ଶାନ୍ତିନିକେତନ ଏହି ଲାଳସାକୁ ମିଥ୍ୟା ବୋଲି ଅସ୍ୱୀକାର

କରେ । ସମସ୍ତେ ଗୋଟାଏ ବାଟରେ ଯିବେ ନାହିଁ; ଗୋଟାଏ ସତ୍ତା ବା ସଂସ୍କୃତିର ଖଣ୍ଡା ତୁଲହୋଇ ସମସ୍ତଙ୍କୁ ସମାନ କରିବାର ପ୍ରବୃତ୍ତିକୁ ଶାନ୍ତିନିକେତନ ପାଗଳାମି ବୋଲି କହେ । ସଂସାର ବିଚିତ୍ର, ମଣିଷ ମଧ୍ୟ ବିଚିତ୍ର; ଏହି ସଂସାରରେ ଜୀବନର ପ୍ରକାଶମାର୍ଗ ମଧ୍ୟ ଅତି ବିଚିତ୍ର । ତଥାପି ଏହି ବିଚିତ୍ରତା ଭିତରେ ହିଁ ଆମକୁ ଏକ-ସୂତ୍ରତାର ସନ୍ଧାନ କରିବାକୁ ହେବ, ଆପଣାର ମାର୍ଗଟାକୁ ଏକମାତ୍ର ମାର୍ଗ ବୋଲି କହିବାର ଧୃଷ୍ଟତାକୁ ଛାଡ଼ିପାରିଲେ ଯାଇ ଏହି ଐକ୍ୟସନ୍ଧାନର ଅଧିକାର ପ୍ରାପ୍ତ ହୋଇପାରିବ ।

ଗୋଟାଏ ବିଷୟରେ ଓଡ଼ିଶାବାସୀ ଶାନ୍ତିନିକେତନ ପାଖରେ ଅବଶ୍ୟ କୃତଜ୍ଞ ରହିଥିବେ । ସ୍ୱାଭାବିକ ଭାବରେ ଓଡ଼ିଆ ସାହିତ୍ୟର ଗବେଷଣା ଆଗ ଓଡ଼ିଶାରେ ହିଁ ହେବାର କଥା, ଆହୁରି ଠିକ୍‌ଭାବରେ କହିବାକୁ ଗଲେ ଆଗ ଓଡ଼ିଶାର ବିଶ୍ୱବିଦ୍ୟାଳୟରେ ହେବାର କଥା । କିନ୍ତୁ ଦୁର୍ଭାଗ୍ୟବଶତଃ ତାହା ହୋଇପାରି ନାହିଁ; ଓଡ଼ିଶାର ବିଶ୍ୱବିଦ୍ୟାଳୟରେ ଓଡ଼ିଆ ଭାଷା ଓ ସାହିତ୍ୟର ଗବେଷଣା ପାଇଁ ସେପରି କୌଣସି ସଂଗଠିତ ଆନୁଷ୍ଠାନିକ ଉଦ୍ୟମ ଏପର୍ଯ୍ୟନ୍ତ ଆରମ୍ଭ ହୋଇଛି କି ନାହିଁ, ମୁଁ ସେକଥା କହି ପାରିବି ନାହିଁ । କିନ୍ତୁ ୧୯୪୮ ମସିହାଠାରୁ ବିଶ୍ୱଭାରତୀର ଗବେଷଣା-ବିଭାଗରେ ଗୋଟିଏ ଓଡ଼ିଆ ଉପବିଭାଗ ମଧ୍ୟ ସ୍ଥାପିତ ହୋଇଛି ଏବଂ ୧୯୫୧ ମସିହାରୁ ହିଁ ତାହାର ଆନୁକୂଲ୍ୟରେ ଓଡ଼ିଆ ସାହିତ୍ୟରେ ଗବେଷଣା ଗ୍ରନ୍ଥମାନ ପ୍ରକାଶିତ ହେବା ଆରମ୍ଭ ହୋଇଛି । ଗତ ଦଶ ବର୍ଷ ଭିତରେ ଏହି ଉଦ୍ୟମ ଅଧିକରୁ ଅଧିକ କୁସୁମିତ ହେବାରେ ଲାଗିଛି । ଏଥିରେ ଆମର ଦେଶ ନିଶ୍ଚୟ ଗୌରବ ହିଁ ଅନୁଭବ କରିବା କଥା । କିନ୍ତୁ ଗୌରବ ଅନୁଭବ କରିବା ସଙ୍ଗେ ସଙ୍ଗେ ଆମକୁ ଏହା ସହିତ ଶାନ୍ତିନିକେତନର ସ୍ୱକୀୟ ଧର୍ମଟି ମନେରଖିବାକୁ ହିଁ ପଡ଼ିବ । ଭୌଗୋଳିକ ଦୃଷ୍ଟିରୁ ବଙ୍ଗଦେଶରେ ଅବସ୍ଥିତ ହୋଇଥିଲେ ମଧ୍ୟ ଶାନ୍ତିନିକେତନ କେବଳ ବଙ୍ଗଦେଶର ସମ୍ପତ୍ତି ନୁହେ । ଯିଏ ରବୀନ୍ଦ୍ରନାଥଙ୍କର ପ୍ରତିଭାକୁ ବୁଝିବା ଲାଗି ଚେଷ୍ଟା କରୁଛି, ସମଗ୍ର ମାନବସଂସ୍କୃତିର ବହୁ ବିଭିନ୍ନତା ସତ୍ତ୍ୱେ ତଥାପି ଐକ୍ୟସୂତ୍ରଟି ଖୋଜିବାକୁ ଯିଏ ଏକ ବିଶ୍ୱଗାମୀ ଆଗ୍ରହନେଇ ବାହାରିଛି, ଶାନ୍ତିନିକେତନ ତାହାର ମଧ୍ୟ ସମ୍ପତ୍ତି । ସେ ଓଡ଼ିଶାରୁ ଆସିଥାଉ ବା ଆସାମରୁ ଆସିଥାଉ, ମିଶରରୁ ଆସିଥାଉ କି ମସ୍କୋରୁ ଆସିଥାଉ, ବିକାରମୁକ୍ତ ମନ ନେଇ ଆସିଥିଲେ ତାପାଇଁ ମଧ୍ୟ ଶାନ୍ତିନିକେତନର ଦ୍ୱାର ସର୍ବଦା ମୁକ୍ତ ହୋଇ ରହିଛି ।

ରବୀନ୍ଦ୍ରନାଥଙ୍କୁ କୋଡ଼ିଏ ବର୍ଷ ହେବା ପୂର୍ବରୁ ସେ ତାଙ୍କର ସାହିତ୍ୟରଚନା ଆରମ୍ଭ କରି ଦେଇଥିଲେ । ଆପଣାର ସର୍ବପ୍ରଥମ କବିତାଗୁଡ଼ିକ କଞ୍ଚା ବୟସର ଲେଖା ବୋଲି କହି ସେ ପ୍ରକାଶ କରିବାକୁ ଦେଇନାହାନ୍ତି । ତାଙ୍କର ସର୍ବପ୍ରଥମ ପ୍ରକାଶିତ ପୁସ୍ତକ 'ପ୍ରଭାତ ସଙ୍ଗୀତ'ଠାରୁ ଶେଷଜୀବନର ରଚନା 'ଶେଷଲେଖା'

ପର୍ଯ୍ୟନ୍ତ ଏକ ସାଧାରଣ ଅବଲୋକନ କରିବାକୁ ଆରମ୍ଭ କଲେ ପ୍ରକୃତରେ କୌଣସି ସମୁଦ୍ର ଅତିକ୍ରମ କରି ଆସୁଥିବା ପରି ମନେହୁଏ । ନାନାପ୍ରକାର ବିଚିତ୍ର ଏହି ସମୁଦ୍ରର ଲୀଳା, ଏହାର କୌଣସି ତରଙ୍ଗଟି ଅନ୍ୟ ଏକ ତରଙ୍ଗର ଅବିକଳ ଅନୁରୂପ ନୁହେଁ । ସେପରି ଆପଣାର ସୃଷ୍ଟିମୟ ଜୀବନ-ପ୍ରବାହରେ ରବୀନ୍ଦ୍ରନାଥ ନାନାବିଧ ପ୍ରୟୋଗ କରି ହିଁ ଚାଲିଛନ୍ତି । ସେ ଆପଣାକୁ ନେଇ ଏହି ପ୍ରୟୋଗ କରିଛନ୍ତି, ସବୁପ୍ରକାର ଅନଧିଗମ୍ୟ ଅପାର ସୃଜନଜଗତ ଭିତରେ ସେ ନିଡ଼ାରତ ଶିଶୁ ପରି ପ୍ରବେଶ କରିଛନ୍ତି । ସେ କୌଣସି ଗୋଟିଏ ସ୍ଥାନରେ ଅଟକିଯାଇ ନାହାନ୍ତି । କୌଣସି ସତ୍ୟର ଚାରି ପାଖରେ ମୋହର ପାଚେରି ଘେରାଇଦେଇ ସେ କେବଳ ତାହାରି ଭିତରେ ସତ୍ୟକୁ ଆବଦ୍ଧ କରି ଦେଖାଇବାର ଅସାହିତ୍ୟିକ ଚେଷ୍ଟା କରିନାହାନ୍ତି । ତାଙ୍କର ଦୀର୍ଘ ଓ ସୃଷ୍ଟିମନ୍ତ ସାହିତ୍ୟିକ ଜୀବନରେ ଏହାହିଁ ଆମକୁ ସବୁଠାରୁ ଅଧିକ ବିସ୍ମୟରେ ଅଭିଭୂତ କରାଇ ଦେଇଥାଏ । କୌଣସି ପୁରାତନ ଭିତରେ ନୁହେଁ, କୌଣସି ପ୍ରାପ୍ତ ସତ୍ୟ ଭିତରେ ନୁହେଁ, କୌଣସି ମତବାଦ ବା ପନ୍ଥା ବନ୍ଧନ ଭିତରେ ନୁହେଁ—ବିକଶିତ ହେବା ହିଁ ହେଉଛି ଏକମାତ୍ର ପୁରାତନ ସତ୍ୟ, ସତ୍ୟର ସନ୍ଧାନ କରିବା ହିଁ ହେଉଛି ଏକମାତ୍ର ସତ୍ୟ, ପଥିକ ହୋଇ ଅବିରତ ପଥ ଚାଲିବା ହିଁ ହେଉଛି ଏକମାତ୍ର ପଥିକଧର୍ମ । 'ବଲାକା' କବିତାରେ ସନ୍ଧ୍ୟାକାଶର ଅସ୍ପଷ୍ଟତା ଭିତରକୁ ଉଡ଼ିଯାଉଥିବା ବକମାଳକାର କଣ୍ଠରେ ସେ କେବଳ ଆପଣା ଆତ୍ମାର ଧ୍ୱନି ଶୁଣାଇ ଦେଇଛନ୍ତି; 'ହେଥା ନୟ, ଅନ୍ୟ କୋଥା ଅନ୍ୟ କୋନ ଖାନେ' । ଜୀବନ ହେଉଛି ଏକ ଦୁଃସମୟ; ଏଠି ଆଳସ୍ୟ, ବିଶ୍ରାମ ଓ ନୀଡ଼ ରଚନା ଲାଗି କୌଣସି ସ୍ଥାନ ନାହିଁ । ତେଣୁ ଆହୁରି ଉଡ଼ିଯିବାକୁ ହେବ, ଆହୁରି ଆଗକୁ ଯିବାକୁ ହେବ । 'ଏଖନ, ଅନ୍ଧ ବନ୍ଧ କରୋନା ପାଖା' ଐତରେୟ ବ୍ରାହ୍ମଣର 'ଚରୈବେତି' ଓ ବଙ୍ଗଦେଶୀ ବାଉଲ୍‌ମାନଙ୍କର ସଙ୍ଗେ ଉଡ଼ିଯିବାର ଧର୍ମ ପରି ରବୀନ୍ଦ୍ରନାଥ ପଥିକଧର୍ମକୁ ହିଁ ଆପଣାର ପ୍ରିୟତମ ଧର୍ମ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ଆଖିରେ ଏହି ଅବିରତ ପଥଯାତ୍ରା ହେଉଛି ମନୁଷ୍ୟର ସର୍ବଶ୍ରେଷ୍ଠ ଇତିହାସ । ଯୁଗପୁରୁଷଙ୍କୁ ସମ୍ବୋଧନ କରି ସେ କହୁଛନ୍ତି, 'ପଥିକ ହେ, ପଥିକ ହେ, ଓଇ ଯେ ଚଲେ, ଯାତ୍ରୀ ତୋମାର୍ ଦଲେ ଦଲେ' ଭଗବାନଙ୍କ ଉଦ୍ଦେଶ୍ୟରେ ତାଙ୍କର ସର୍ବଶ୍ରେଷ୍ଠ ପ୍ରଣାମ ହେଉଛି ଏହି ପଥ ଚାଲିବାର ପ୍ରଣାମ । ପୁରୁଣା ବସା ଛାଡ଼ି ନୂତନର ଅନ୍ୱେଷଣରେ ସଙ୍ଗେ ଚାଲିଯିବାର ପ୍ରଣାମ । ଏହାହିଁ ହେଉଛି ତାଙ୍କର ଭଲ ପାଇବାର ପ୍ରଣାମ । କାରଣ ରବୀନ୍ଦ୍ରନାଥଙ୍କର ଭଗବାନ ନିଜେ ହେଉଛନ୍ତି ପଥିକ; ତାଙ୍କର ପଥ ଚାଲିବାରେ ବିଶ୍ରାମ ନାହିଁ ସେ ହେଉଛନ୍ତି ପାନ୍ଥ; ତେଣୁ ସେହି ହେଉଛନ୍ତି 'ପାନ୍ଥଜନେର ସଖା' ।

ନା—ରବୀନ୍ଦ୍ରନାଥ କୌଣସିଠାରେ ମଧ୍ୟ ଅଟକି ଯାଇ ନାହାନ୍ତି । କାରଣ ମଣିଷ ଉପରେ ତାଙ୍କର ଅସୀମ ବିଶ୍ୱାସ ରହିଛି । ସୃଷ୍ଟିର ବିଧାନ ଉପରେ ମଧ୍ୟ ତାଙ୍କର ଅଟଳ ବିଶ୍ୱାସ ରହିଛି । ଯିଏ ଏହି ବିଶ୍ୱାସଟିକୁ ହରାଇବସେ, ଆପଣା ମତବାଦ ବା

ସମ୍ପ୍ରଦାୟ ଭିତରେ ଯିଏ ଅଟକିଯାଏ, କେବଳ ସେହି ଆଗକୁ ଯିବାର ସମସ୍ତ ଶକ୍ତି ହରାଇବସେ । କିନ୍ତୁ ପ୍ରଧାନତଃ ଏହି ବିଶ୍ୱାସବଳରେ ହିଁ ରବୀନ୍ଦ୍ରନାଥଙ୍କର ସୃଷ୍ଟି ସତେଜ କୁସୁମିତ ହୋଇ ଚାଲିଛି । ‘ପ୍ରଭାତ ସଂଗୀତ’ଠାରୁ ‘ଶେଷଲେଖା’ ପର୍ଯ୍ୟନ୍ତ କୁସୁମିତ ହେବାର ଏହି ମହୋତ୍ସବମୟ ଓ ଆତ୍ମପରିଚୟ-ଉଚ୍ଛ୍ୱସିତ ଶୋଭାଯାତ୍ରାର ଅନୁସରଣ କରି ରବୀନ୍ଦ୍ରନାଥଙ୍କର ପରିଚୟ ଲାଭ କରିବାକୁ ଚେଷ୍ଟା କଲାବେଳେ ଆପଣା ଭିତରେ ଠିକ୍ ନବଯୌବନ ଲାଭ କଲାପରି ମନେହୁଏ । କି ଶକ୍ତି, କି ଆନନ୍ଦ, କି ରସଗ୍ରାହିତା, କି ବିଶ୍ୱାସ ଓ କି ସତତ ପ୍ରସ୍ତୁତ ଆତ୍ମନିବେଦନ ! କୌଣସି ସ୍ଥାନରେ କୌଣସି ତତ୍କାଳୀନ ବିପର୍ଯ୍ୟୟରେ ବିପର୍ଯ୍ୟସ୍ତ ହୋଇ ରବୀନ୍ଦ୍ରନାଥଙ୍କର ସୃଜନଶୀଳ ମନ ସଂସାରକୁ ଖରାପ ବୋଲି କହିବାର ଭୁଲ କରିନାହିଁ । ଏହି ସଂସାରରୁ ପଳାଇଯାଇ ଆଉ କେଉଁଠି ସ୍ୱର୍ଗ ରଚନା କରିବାର ଆତୁର ସ୍ୱପ୍ନ ଦେଖିନାହିଁ ବା ଗୁରୁଜନ ପରି ଉପରେ ବସି ଅର୍ବାଚୀନ ନବାଗତମାନଙ୍କୁ ଅଭିଶାପ ଦେବାର ଧୃଷ୍ଟତା ଦେଖାଇନାହିଁ । ପରିପୂର୍ଣ୍ଣ ତାରୁଣ୍ୟର ହିଁ କେବଳ ଏପରି ପରିଚୟ ଦେବାର ଶକ୍ତି ରହିଛି । ଏହି ସଂସାରର ସବୁଠିଁ ସବୁପ୍ରାଣରେ ତାଙ୍କର ପ୍ରାଣ ଧ୍ୱନିତ ହୋଇ ଉଠୁଛି । ଆପଣାର ଚେତନାକୁ ସଂପ୍ରସାରିତ କରି ସେ ଅତୀତ ଓ ଭବିଷ୍ୟତ ଭିତରେ ମଧ୍ୟ ପ୍ରବେଶ କରିଚନ୍ତି । ଜୀବନର ଶେଷ ପର୍ବରେ ପହଞ୍ଚି ସେ କ୍ଳାନ୍ତ ହୋଇ ପଡ଼ିନାହାନ୍ତି । ମିଠବାଣୀ ନେତା ପରି ବା ପୁରାତନ ବାଇବେଲ୍‌ର ଧର୍ମଗୁରୁମାନଙ୍କ ପରି ସେ ସଂସାର ଧ୍ୱଂସ ହୋଇଯିବ ବୋଲି ମାଳିକା ଶୁଣାଇ ନାହାନ୍ତି । ଭବିଷ୍ୟତର ଗର୍ଭ ଭିତରୁ ସେ ତଥାପି ଏକ ମହାମାନବର ବିଜୟମଣି ଶବ୍ଦ ଶୁଣିବାକୁ ପାଇଚନ୍ତି, ଯାହାର ଆବିର୍ଭାବରେ ପୁରାତନ ଅମାନିଶାର ସବୁ ଦୁର୍ଗ ଓ ତୋରଣ ଭଗ୍ନ ହୋଇ ଧୂଳି ଉପରେ ଭୂଲୁଣ୍ଠିତ ପଡ଼ିବ । ସେହି ମାନବ-ଅଭ୍ୟୁଦୟ ଲାଗି ସ୍ୱପ୍ନମନ୍ତ୍ର ଉଚ୍ଚାରଣ କରି ସେ ଜଗତର ଯୌବନଯାତ୍ରାରେ ସମ୍ମିଳିତ ହେବାକୁ ବସିଚନ୍ତି । ଶେଷଜୀବନର ଲେଖା ‘ଐକତାନ’ କବିତାଟିକୁ ସେ ‘ଜନ୍ମଦିନେ’ ଗ୍ରନ୍ଥରେ ସ୍ଥାନ ଦେଇଚନ୍ତି । ସେଥିରେ ସେ ଠିକ୍ ଜଣେ ସତ୍ୟ ଓ ସୌନ୍ଦର୍ଯ୍ୟଗ୍ରାହୀ କବି ପରି ଆପଣାର ଅପୂର୍ଣ୍ଣତା ସ୍ୱୀକାର କରିବାକୁ ବସିଚନ୍ତି । ସେ କହିଚନ୍ତି—‘ମୋର କବିତା ବିଚିତ୍ର ପଥରେ ଗତି କରିଥିଲେ ହେଁ ତଥାପି ସର୍ବତ୍ରଗାମୀ ହୋଇ ପାରିନାହିଁ; ସବୁ ମଣିଷର ଅନ୍ତରଙ୍ଗ ଅନୁଭୂତିମୟ ଜୀବନ ସହିତ ସମ୍ମିଳିତ ହୋଇ ପାରିନାହିଁ ।’ ଏହି ବିପୁଳା ପୃଥିବୀର ସେ ଅଧିକାଂଶକୁ ଜାଣିଚନ୍ତି । ଅଦେଖା ଅନେକ ରହିଯାଇଚି । ଜୀବନ-ବୀଣାର ଅନେକ ତନ୍ତ୍ରୀ ତଥାପି ଅଛୁଆଁ ରହିଯାଇଚି । ଆପଣାର ଅପୂର୍ଣ୍ଣତା ଘୋଷଣା କରି ସେ ଅନାଗତ ଭବିଷ୍ୟତର ନୂତନ କବି ଲାଗି ଆବାହନ ଜଣାଇଚନ୍ତି । ସେହି ନୂତନ କବିମାଟିର ଅଧିକ ନିକଟବର୍ତ୍ତୀ ହୋଇ ରହିବ, ଅଜ୍ଞାତ ଜନ ଓ ଅଖ୍ୟାତ ମନର ଯାବତୀୟ ମନୋବେଦନାକୁ ସେ ଆପଣାର ସାହିତ୍ୟିକ ପ୍ରକାଶଦ୍ୱାରା ଜୀବନ-ମୟ କରିଦେଇ ପାରିବ;—ତାହାର ସଙ୍ଗୀତର ଧ୍ୱନି ଭିତରେ ରବୀନ୍ଦ୍ରନାଥଙ୍କର ଅପୂର୍ଣ୍ଣ ସଙ୍ଗୀତର ଧ୍ୱନି ମିଶି ପରିପୂର୍ଣ୍ଣତା ଲାଭ କରିବ ।

ସତ୍ୟ, ଶିବ ଓ ସୁନ୍ଦର ଭିତରେ ରବୀନ୍ଦ୍ରନାଥ କଦାପି କୌଣସି ଅନ୍ତର୍ଦ୍ୱନ୍ଦ୍ୱ ଦେଖିନାହାନ୍ତି । ଯାହା ସତ୍ୟ, ତାହାହିଁ ଶିବ, ପୁଣି ତାହାହିଁ ସୁନ୍ଦର । ତେଣୁ ତାଙ୍କର ଜୀବନ ଭିତରେ ଦାର୍ଶନିକ, ସତ୍ୟାନ୍ୱେଷୀ ଓ କବି ଚେତନାଗୁଡ଼ିକ ଜୀବନଦୃଷ୍ଟି ଏକ ବେଣୀ ହୋଇ ପ୍ରକାଶ ପାଇଛି । ରବୀନ୍ଦ୍ରନାଥଙ୍କର ସମୃଦ୍ଧ କଳ୍ପନାମୟ ଭାଷାରେ କହିବାକୁ ଗଲେ 'ସୁନ୍ଦରର ପାଦପୀଠ ତଳେ ହିଁ କଲ୍ୟାଣର ଦୀପ ଜଳୁଛି' । ସକାଳର ଉଦୟ ଭାସ୍ୱର ସୂର୍ଯ୍ୟ ଆଡ଼କୁ ଅନାଇ ସେ ସତ୍ୟର ସୁନ୍ଦର ରୂପର ପ୍ରତ୍ୟକ୍ଷ କରୁଛନ୍ତି । ଈଶାବାସ୍ୟୋପନିଷଦରେ ଦିବ୍ୟଦୃଷ୍ଟିସମ୍ପନ୍ନ ବ୍ୟକ୍ତିଙ୍କୁ କବି ବୋଲି ବର୍ଣ୍ଣନା କରାଯାଇଛି । ଶଙ୍କରାଚାର୍ଯ୍ୟ ଆପଣାର ଭାଷ୍ୟରେ ଏହି କବିଙ୍କୁ 'କ୍ରାନ୍ତଦର୍ଶୀ' ବୋଲି ବ୍ୟାଖ୍ୟା କରିଛନ୍ତି । କ୍ରାନ୍ତଦର୍ଶୀ ଅର୍ଥାତ୍ ପାରଦର୍ଶୀ, ଅର୍ଥାତ୍ ଯିଏ ସବୁ ପ୍ରକାର ସୀମା ଅତିକ୍ରମ କରି ଆହୁରି ସେପାଖକୁ ଦେଖିବାର ଶକ୍ତି ଅର୍ଜନ କରିଛି । ରବୀନ୍ଦ୍ରନାଥ ଯଥାର୍ଥରେ କବି ଥିଲେ; କାରଣ ସେ କ୍ରାନ୍ତଦର୍ଶୀ ଥିଲେ, କ୍ରାନ୍ତଦର୍ଶନକୁ ହିଁ ସେ ଆପଣା ଜୀବନର ପରମଧର୍ମ ବୋଲି ମନେକରୁଥିଲେ । ତାଙ୍କର 'ଡାକଘର' ନାଟକର ବାଳକ ଅମଲ୍ ଯେପରି ଅନେକ ଅଦୃଶ୍ୟ ଓ ଅନେକ ଅଗମ୍ୟ ସହିତ ସଂଯୋଗ ସ୍ଥାପନ କରିବା ଲାଗି ବ୍ୟାକୁଳ ହୋଇ ପଡ଼ିଛି, ରବୀନ୍ଦ୍ରନାଥ ମଧ୍ୟ ତାଙ୍କର ସାରା ଜୀବନ ଆପଣାର କୃତି ଓ କଳ୍ପନା ମଧ୍ୟଦେଇ 'ଆହୁରି ଅଧିକ, ଅଧିକରୁ ଅଧିକ' ଲାଗି ବ୍ୟାକୁଳ ହୋଇ ରହିଥିଲେ । ଏହିପରି ଏକ ଅଭିଳାଷ ହିଁ ଏହି ମର ମଣିଷଜୀବନଟାକୁ ଅମରତ୍ୱ ଦେଇଥାଏ । ସମସ୍ତ ସାଂସାରିକତା ସତ୍ତ୍ୱେ ମଣିଷର ଆଖିରେ ଦେବତାର ଦୃଷ୍ଟି ଭରି ଦେଇଯାଏ । ରବୀନ୍ଦ୍ରନାଥ ସତତ ଚଞ୍ଚଳ ଥିଲେ; ସୁଦୂରର ବିପୁଳର ବ୍ୟାକୁଳ ବଂଶୀଧ୍ୱନି ତାଙ୍କୁ ବଡ଼ ପିପାସିତ କରି ରଖିଥିଲା । ଜୀବନର ଶେଷସୀମାରେ ଆସି ପହଞ୍ଚି ତଥାପି ତାଙ୍କର ମନରେ ଆମେ ଏହି ଅସନ୍ତୋଷ ରହିଥିବାର ଦେଖିବାକୁ ପାଇବା । ଦିବ୍ୟବୋଧର ଭାଷାରେ ଏହି ଅସନ୍ତୋଷକୁ କେବଳ ଏକ ଈଶ୍ୱରୀୟ ଅସନ୍ତୋଷ ବୋଲି କୁହାଯାଇ ପାରିବ । ଏହି ସୃଷ୍ଟି ଯେପରି ତଥାପି ତାଙ୍କ ପାଖରେ ରହସ୍ୟ ହୋଇ ରହିଗଲା, ଏତେ ଦ୍ୱାରୋଦ୍‌ଘାଟନ ସତ୍ତ୍ୱେ ତଥାପି ଯେପରି ଅସଲ ପ୍ରବେଶଦ୍ୱାରଟି ଅନୁଦ୍‌ଘାଟିତ ରହିଗଲା । ସୃଷ୍ଟିର ପ୍ରଥମ ଦିନର ପରିପୃଷ୍ଟ ରହସ୍ୟ ସର୍ବଶେଷ ଦିନର ପ୍ରଶ୍ନକର୍ତ୍ତା ପାଖରେ ମଧ୍ୟ ସେହିପରି ରହସ୍ୟ ହୋଇ ରହିଗଲା । 'ଶେଷଲେଖା'ର ଗୋଟିଏ କବିତାରେ ରବୀନ୍ଦ୍ରନାଥ ଏହି ରହସ୍ୟକୁ କାବ୍ୟରୂପ ଦେବାକୁ ଚେଷ୍ଟା କରିଛନ୍ତି :—

"ପ୍ରଥମ ଦିନେର ସୂର୍ଯ୍ୟ
ପ୍ରଶ୍ନ କରେଛିଲ
ସତ୍ତାର ନୂତନ ଆବିର୍ଭାବେ—
କେ ତୁମେ ?

ମେଲେ ନ ଉତ୍ତର
ବତ୍ସର ବତ୍ସର ଚଲେଗେଲ ।
ଦିବସେର ଶେଷ ସୂର୍ଯ୍ୟ
ଶେଷ ପ୍ରଶ୍ନ ଉଚ୍ଚାରିଲ
ପଶ୍ଚିମ ସାଗରତୀରେ
ନିସ୍ତବ୍ଧ ସନ୍ଧ୍ୟାୟ୍—
କେ ତୁମି ?
ପେଲ ନା ଉତ୍ତର ।" (ରଚନା—୨୭ । ୭ । ୪୧)

କେବଳ ଅନ୍ତଃପଥର ଯାତ୍ରାଦ୍ୱାରା ହିଁ ମନୁଷ୍ୟ ଏହି ଛଳନାମୟ ରହସ୍ୟକୁ ଭେଦ କରିପାରିବ—ଅନ୍ତର ଭିତରେ ତାଙ୍କର ଜ୍ୟୋତିଷ୍କର ଆଲୋକଦ୍ୱାରା ପଥ ଦେଖି ଆଗକୁ ଯିବାକୁ ହେବ । ତା' ହେଲେ ସବୁ ସରଳ ହୋଇଯିବ, ସବୁ ସମସ୍ୟାର ଅନ୍ତ ହୋଇଯିବ । ଜୀବନର ସର୍ବଶେଷ କବିତାରେ (ତୋମାର ସୃଷ୍ଟିର ପଥ—ରଚନା -୩୦ । ୭ । ୪୧) ରବୀନ୍ଦ୍ରନାଥ ଏହାହିଁ ସୂଚିତ କରିଯାଇଛନ୍ତି ।

ଜାଣିଶୁଣି ଏହି ପ୍ରବନ୍ଧଟିରେ ରବୀନ୍ଦ୍ର-ସାହିତ୍ୟର ବିଶେଷ ଆଲୋଚନା କରାଯାଇ ନାହିଁ । ତାଙ୍କର ରଚନା-ସମୁଦ୍ରରୁ ଏଠୁ ସେଠୁ ଚୋନାଏ ବା କେନାଏ ବୁହିଁ ଆଣି ଏଇଟା ବା ସେଇଟା ପ୍ରମାଣ କରି ବସିବାଦ୍ୱାରା ମୋର ପାଣ୍ଡିତ୍ୟ ଅପେକ୍ଷା ଧୃଷ୍ଟତା ହିଁ ଅଧିକ ପ୍ରକାଶ ପାଇଥାନ୍ତା । ଓଡ଼ିଆ ଭାଷା ଓ ବଙ୍ଗଳା ଭାଷା ଭିତରେ ରହିଥିବା ଦୂରତାକୁ ଆଦୌ ଦୂରତା ବୋଲି କହିବା ଉଚିତ ନୁହେଁ । ଯିଏ ଓଡ଼ିଆ ସାହିତ୍ୟର ଆଲୋଚନା କରିଥିବେ, ବଙ୍ଗଭାଷା ଓ ସାହିତ୍ୟରେ ପ୍ରବେଶ କରିବାକୁ ଓ ତାହାର ରସଗ୍ରହଣ କରିବାକୁ ସେମାନେ କଦାପି କୌଣସି ପ୍ରକାର ଆୟାସ ଅନୁଭବ କରିବେ ନାହିଁ । କେବଳ ଆପଣାର ହୃଦୟକୁ ଆଚ୍ଛନ୍ନ କରି ରଖିଥିବା ପୂର୍ବାଗ୍ରହଗୁଡ଼ାକୁ ତ୍ୟାଗ ଆସିପାରିଲେ ହେଲା । ଓଡ଼ିଆ ଆଉ ବଙ୍ଗଳା ଏହି ଦୁଇ ଭାଷା ଭିତରେ ସେତେ ବେଶୀ ଅନ୍ତର ନାହିଁ । ରବୀନ୍ଦ୍ର-ସାହିତ୍ୟ ଓ ରବୀନ୍ଦ୍ର-ପ୍ରତିଭା ସହିତ ପରିଚୟ ଲଭ କରିବା ଦୃଷ୍ଟିରୁ ମୁଁ ଏହାକୁ ଏକ ସୌଭାଗ୍ୟ ବୋଲି ମନେକରୁଛି । ଓଡ଼ିଶାର ଗଙ୍ଗାଧର ମେହେର ଓ ଗୋପବନ୍ଧୁ ଦାଶଙ୍କୁ ଆମେ ଯେତିକି ଆଗ୍ରହରେ ଅଧ୍ୟୟନ କରୁଛୁ, ରବୀନ୍ଦ୍ରନାଥଙ୍କୁ ମଧ୍ୟ ଆମର ସେତିକି ଆଗ୍ରହରେ ଅଧ୍ୟୟନ କରି ଶିଖିବା ଉଚିତ, ସେତିକି ଦୋଷମୁକ୍ତ ନିର୍ମଳ ମନନେଇ ସେଥିରେ ଅବଗାହି ଶିଖିବା ଉଚିତ ।

ରବୀନ୍ଦ୍ରନାଥ ସମସ୍ତ ପ୍ରକାର ସଙ୍କୀର୍ଣ୍ଣତାର ବିରୋଧୀ ଥିଲେ, ସମସ୍ତ ପ୍ରକାର କ୍ଷୁଦ୍ରତା ଓ ଖର୍ବତାକୁ ସେ ବାରବାର ନାନାକ୍ଷେତ୍ରରେ ଅସ୍ୱୀକାର କରିଥିଲେ । ଆଜି

ଆମ ଦେଶରେ ଆମର ଲକ୍ଷ୍ୟ ଦତାଗୁଡ଼ାକ ହିଁ ଆମର ସବୁ ଟାଣି ଦେବାକୁ ବସିଛ । ସେହି କାରଣରୁ ସ୍ୱାଧୀନତାର ଚଉଦ ବର୍ଷ ପରେ ମଧ୍ୟ ଆମେ ସ୍ୱାଧୀନ ଜାତିର କର୍ତ୍ତବ୍ୟ ସମୁଦ୍‌ଭୂତ ଗୌରବ ଅନୁଭବ କରିବା ପରିବର୍ତ୍ତେ ଆପଣାକୁ ନାନାଭାବେ ଖର୍ବ ଓ ସର୍ବସ୍ୱାନ୍ତ ମନେକରୁଛୁ । ଏ ଦେଶରେ ଯାହା ଯେଉଁଠି ସମ୍ପୂର୍ଣ୍ଣ ଥିଲା, ଆଜି ସେସବୁ ଯେପରି ଖଣ୍ଡ ଖଣ୍ଡ ହୋଇଯିବାକୁ ବସିଛ । ବାହାର ପରି ଆମର ଭିତରଟା ମଧ୍ୟ ଯେପରି ଖଣ୍ଡ ଖଣ୍ଡ ହୋଇଯାଇଛ । ନାନାପ୍ରକାର ଖଣ୍ଡିତ ଅନୁରକ୍ତି ଆମକୁ ସବୁ କ୍ଷେତ୍ରରେ କେବଳ ଦୁର୍ମୁଖ କରି ପକାଇଛ । ସାହିତ୍ୟକ୍ଷେତ୍ରରେ ମଧ୍ୟ ଏହି ସମଗ୍ର ଦୃଷ୍ଟି କ୍ରମେ ନଷ୍ଟ ହୋଇଗଲାଣି । ଶିକ୍ଷାକ୍ଷେତ୍ରରେ ଆଜି କୌଣସି ଜୀବନ ନାହିଁ । ଜାତୀୟ ଜୀବନରେ କୌଣସି ଶକ୍ତି ଓ ଶୃଙ୍ଖଳା ନାହିଁ । ଆମେ ସମସ୍ତେ ପରସ୍ପରଠାରୁ ସାଙ୍ଗ ଛାଡ଼ି ଗଲୁଣି, ଏକୁଟିଆ ହୋଇ ଆପଣା ସ୍ୱାର୍ଥର କୁମ୍ଭୀ ଭିତରେ ସମସ୍ତ ଜଗତଟାକୁ ପୂରାଇଦେବୁ ବୋଲି ଆମେ ଯେତିକି ଚେଷ୍ଟା କରୁଛୁ, ଆମର ଶକ୍ତି ସେତିକି ଖସି ଖସି ଯାଉଛ । ଗୋଟାଏ ପ୍ରକାର ବିକୃତ ପ୍ରଲୋଭନ ଜର୍ଜର ଦଉଡ଼ରେ ଯେପରି ଆମେ ସମସ୍ତେ ହତବଳ ହୋଇ ଚତୁର୍ଦ୍ଦିଗରେ କେବଳ ଅନ୍ଧାର ଓ ବିଲୋପର ବିଭୀଷିକା ଦେଖିବାକୁ ଆରମ୍ଭ କଲୁଣି । ଏ ସମାଜର ନେତା ବାଟ କଢ଼ାଇ ନେଇଯିବାର ଶକ୍ତି ହରାଇ ବସିଲେଣି, ଏ ସମାଜର ଶିକ୍ଷକ ଶିକ୍ଷା ଦେବାର ଶକ୍ତି ହରାଇ ବସିଲେଣି, ଏ ସମାଜର ସାହିତ୍ୟିକ ନିର୍ଲଜ୍ଜ ଭାବରେ ସତ୍ତ୍ୱମଣ୍ଡପର ସମ୍ମାନରେ ଭଣ୍ଡି ଯାଇ ତୋଷ କରି ରଖିବାକୁ ହିଁ ସାହିତ୍ୟ ବୋଲି ଭ୍ରମକରି ବସିଲେଣି । ଏ ସମାଜର ଯାବତୀୟ ଅନ୍ୟାୟକୁ ଅନ୍ୟାୟ ବୋଲି କହିବାକୁ ତାର ମୁଖରେ ଭାଷା ନାହିଁ; କାରଣ ତାର ମନ ଭିତରେ ଆଉ କୌଣସି ସାହସ ନାହିଁ ଓ ହୃଦୟ ଭିତରେ କୌଣସି ପ୍ରକାର ଶ୍ରଦ୍ଧା ଓ କୌଣସି ପ୍ରକାର ବିଶ୍ୱାସ ନାହିଁ । ଏତିକିବେଳେ ରବୀନ୍ଦ୍ରନାଥଙ୍କର କଥା ବେଶୀ ମନେପଡୁଛ । ଆଜିକୁ ପ୍ରାୟ ଷାଠିଏ ବର୍ଷ ତଳେ ସେ ଏହି ଦେଶର ଆବଶ୍ୟକତାକୁ ଏହିପରି ଭାଷାରେ ପ୍ରକାଶ କରିଥିଲେ ।

> "ଅନ୍ନ ଚାଇ, ପ୍ରାଣ ଚାଇ, ଆଲୋ ଚାଇ, ଚାଇ ମୁକ୍ତବାୟୁ,
> ଚାଇ ବଲ୍, ଚାଇ ସ୍ୱାସ୍ଥ୍ୟ, ଆନନ୍ଦ-ଉଜ୍ଜ୍ୱଲ ପରମାୟୁ,
> ସାହସ ବିସ୍ତୃତ ବକ୍ଷପଟ ।"

ଜଗତ ସମ୍ମୁଖରେ ଏହି 'ବିଶ୍ୱାସର ଛବି'ଟିକୁ ଉନ୍ମୋଳିତ କରି ଧରିବାକୁ ରବୀନ୍ଦ୍ରନାଥ କବିଙ୍କୁ ଉଦ୍‌ବୋଧନ ଦେଇଥିଲେ । ତାଙ୍କର ଶତବାର୍ଷିକୀର ଉତ୍ସବମୟ ସମାରୋହରେ ତାଙ୍କର ପ୍ରତିଭା, ତାଙ୍କର ବିଶ୍ୱାସ ଓ ତାଙ୍କର ନିର୍ଭୀକତାର ଏକଶତାଂଶ ମଧ୍ୟ ଯଦି ଆମ ଭିତରେ ଅବତାର ଗ୍ରହଣ କରିପାରେ, ତା'ହେଲେ ମୁଁ ତାହାକୁ ହିଁ ଏ ଦେଶର ପରମ ସୌଭାଗ୍ୟ ବୋଲି କହିବି । ଇଂଲଣ୍ଡର କବି ଓ୍ୱାର୍ଡ୍‌ସ୍‌ ଓ୍ୱର୍ଥ

ଇଂଲଣ୍ଡର ଦୁର୍ଦ୍ଦିନରେ ଜାତିର ପରଲୋକଗତ କବି ମିଲଟନଙ୍କର ସ୍ମରଣ କରିଥିଲେ । ଏ ଜାତିର ଦୁର୍ଦ୍ଦିନରେ ଆଜି ଆମେ ରବୀନ୍ଦ୍ରନାଥଙ୍କୁ ସ୍ମରଣ କରିବା ଓ ତାଙ୍କର ପ୍ରେରଣାକୁ ଆତ୍ମଗତ କରିବାକୁ ଚେଷ୍ଟା କରିବା । ଏହି ଜାତିର ଜୀବନରୁ ସକଳ ପ୍ରକାର ମୃତ୍ୟୁର ନିରାକରଣ ଲାଗି ଆଜି ଆମେ ରବୀନ୍ଦ୍ରନାଥଙ୍କର ଏହି ଉଦ୍‌ବୋଧନ ସଙ୍ଗୀତଟିଦ୍ୱାରା ଆପଣାର ଉଦ୍‌ବୋଧନ କରାଇବା :—

ହେ ଭୈରବ, ଶକ୍ତି ଦାଓ ଭକ୍ତପାନେ ଚାହ ।
ଦୂର କରୋ ମହାରୁଦ୍ର
ଯାହା ମୁଗ୍ଧ ଯାହା କ୍ଷୁଦ୍ର,
ମୃତ୍ୟୁରେ କରିବେ ତୁଚ୍ଛ ପ୍ରାଣେର ଉତ୍ସାହ ॥
ଦୁଃଖେର ମନ୍ଥନ ବେଗେ ଉଠିବେ ଯେ ଅମୃତ,
ଶଙ୍କା ହତେ ରକ୍ଷା ପାବେ ଯାରା ମୃତ୍ୟୁଭୀତ,
ତବ ଦୀପ୍ତ ରୌଦ୍ରତେଜେ
ନିର୍ଝରିୟା ଗଲିବେ ଯେ
ପାଷାଣ ଶୃଙ୍ଖଲେ ଯୁକ୍ତ ପ୍ରାଣେର ପ୍ରବାହ ॥

ବର୍ତ୍ତପୁରୀ, ଆଗ୍ରା
୧୩ । ୪ । ୬୧

# ରବୀନ୍ଦ୍ରନାଥ

—ଗୋପୀନାଥ ମହାନ୍ତି

(୧୯୬୧—ରବୀନ୍ଦ୍ର ଶତବାର୍ଷିକୀ ଉପଲକ୍ଷେ ଶାନ୍ତିନିକେତନରେ ଅନୁଷ୍ଠିତ ଭାରତୀୟ ଭାଷାସାହିତ୍ୟ ସମାରୋହରେ ଲେଖକଙ୍କ ଇଂରାଜୀ ଭାଷଣର ଅନୁବାଦ ।)

ଏହି ତାଙ୍କର ସାଧନାର ପୀଠ, ଏହି ଶାନ୍ତିନିକେତନ । ଏଠି ସର୍ବମୁକ୍ତା ସରସ୍ୱତୀ ସୌନ୍ଦର୍ଯ୍ୟ ଓ ମହିମାମଣ୍ଡିତା ହୋଇ ବାରମ୍ବାର ତାଙ୍କ ନିକଟକୁ ଆସୁଥିଲେ, ବାରମ୍ବାର ତାଙ୍କୁ ଭାବ ଓ କଳ୍ପନା ଦାନ କରୁଥିଲେ । ସହସ୍ର ସହସ୍ର କବିତା, ବହୁ ଗଳ୍ପ ଉପନ୍ୟାସ, ନାଟକ ଓ ପ୍ରବନ୍ଧ, ତାଙ୍କଦ୍ୱାରା ଅଂକିତ ହୋଇଥିବା ନାନାଚିତ୍ର, ସେ ନିଜେ ଉଦ୍‌ଭାବନ କରିଥିବା ନାନା ଛନ୍ଦ ଓ ନୃତ୍ୟଭଙ୍ଗୀ, ଏହାର ସମଷ୍ଟି ହୋଇ ତାଙ୍କର ସତ୍ୟସୁନ୍ଦରମୟ ବିଶାଳ ସୃଷ୍ଟି, ତାଙ୍କର ଅଗାଧ ପାଣ୍ଡିତ୍ୟ ସମଗ୍ର ପୃଥିବୀ ବ୍ୟାପୀ ବିଦ୍ୱଜ୍ଜନ ସଂପ୍ରଦାୟ ସହିତ ତାଙ୍କର ସମ୍ବନ୍ଧ—ନାନା ସୃଷ୍ଟି, ନାନା ଗୁଣ, ନାନା ସମ୍ପର୍କରେ ସମନ୍ୱିତ ହୋଇ ଏ ଯୁଗର ପଛଭୂମି ଆଗରେ ସେ ଠିଆ ହୋଇଥିଲେ । ଲକ୍ଷ ଲକ୍ଷ ମନୁଷ୍ୟଙ୍କୁ ସେ ଉଦ୍‌ବୁଦ୍ଧ କରିଥିଲେ । ଶାନ୍ତି ଓ ପ୍ରେମ, ଆଶା ଓ ସାହସ, ସମନ୍ୱୟ ଓ ଉଦାର ମାନବିକତାମୟ ତାଙ୍କର ବାଣୀ ଅଗଣିତ ବ୍ୟକ୍ତିଙ୍କ ନିଭୃତ ଚେତନାର ଗହନ କନ୍ଦରକୁ ବୋଲି ଭେଦି ଯାଇଥିଲା ।

ତୋଫାନ ବେଗରେ ଏତେ କଥା ମନେ ପଡ଼ିଯାଏ । ପଚାଶ ବର୍ଷ ଭିତରେ ପୃଥିବୀରେ ଯେତେ ଲୋକ ନୋବେଲ୍ ପୁରସ୍କାର ପ୍ରାପ୍ତ ହୋଇଥିଲେ, ତହିଁରେ ଭାରତରୁ ଏକମାତ୍ର ସେ ଏଥିପାଇଁ ପୃଥିବୀର ଜନସମାଜ ଆଖିରେ ତାଙ୍କର ବିଶିଷ୍ଟ ସମ୍ମାନ ଥିଲା ଓ ଏକଦା ତାହା ଗୋଟିଏ ବିଶିଷ୍ଟ ଘଟନା ବୋଲି ପରିଗଣିତ ହେଉଥିଲା, ଯେଉଁଥିପାଇଁ ପ୍ରତ୍ୟେକ ଭାରତୀୟ ଗର୍ବ ଅନୁଭବ କରୁଥିଲେ ।

କିନ୍ତୁ ଏ ଦେଶର ଜନସାଧାରଣ ତାଙ୍କ ଉଦ୍ଦେଶ୍ୟରେ ନୀରବରେ ଯେଉଁ ବିପୁଳ ଶ୍ରଦ୍ଧାର ସମ୍ଭାର ଟେକିଛନ୍ତି ଓ ତାଙ୍କର ଶତବାର୍ଷିକୀ ଉପଲକ୍ଷେ ତାଙ୍କ ସ୍ମୃତି ପ୍ରତି ସମଗ୍ର ପୃଥିବୀରେ ଯେଉଁ ଅଭୂତପୂର୍ବ ସମ୍ମାନ ପ୍ରଦର୍ଶିତ ହେଉଛି ତା ତୁଳନାରେ ନୋବେଲ୍ ପୁରସ୍କାରର ଗୌରବ ଅତି ସାମାନ୍ୟ ।

ବଙ୍ଗଳା ଓ ଓଡ଼ିଶା ଯୋଡ଼ିକଯାକ ପ୍ରଦେଶ କତଲୁ 'କାଳ ଲାଗିରହିଛନ୍ତି । ସେ ଦୁହେଁ ପରସ୍ପର ସହିତ ଯେଉଁ ଶ୍ରଦ୍ଧା ଓ ମୈତ୍ରୀର ବନ୍ଧନରେ ବାନ୍ଧିହୋଇ ରହିଛନ୍ତି, ତାହା ଐତିହାସିକ । ଶ୍ରୀ ଚୈତନ୍ୟଙ୍କ ସମୟରୁ ସେହି ବନ୍ଧନ ଅନଭେଦ୍ୟ ହୋଇଯାଇଛି । ଶ୍ରୀ ଚୈତନ୍ୟ ଉତ୍କଳଦେଶରେ ପ୍ରସିଦ୍ଧି ଲାଭକଲେ । ତତ୍ପୂର୍ବରୁ ଉତ୍କଳରେ ବୈଷ୍ଣବଧର୍ମ ଥିଲା; . ଶ୍ରୀଚୈତନ୍ୟଙ୍କ ସମୟରୁ ସେହି ବୈଷ୍ଣବଧର୍ମରେ ପରିବର୍ତ୍ତନ ଘଟିଲା । ପରବର୍ତ୍ତୀ କାଳରେ ଦୀନକୃଷ୍ଣ, ଅଭିମନ୍ୟୁ, ଗୋପାଳକୃଷ୍ଣ, କବିସୂର୍ଯ୍ୟଙ୍କ ସମେତ ଯେଉଁ ଶତ ଶତ କବି ବିଖ୍ୟାତ ହେଲେ ସେ କବିମାନେ ବୈଷ୍ଣବ ସମ୍ପ୍ରଦାୟଭୁକ୍ତ ହୁଅନ୍ତୁ ବା ନ ହୁଅନ୍ତୁ, ସେମାନଙ୍କ କବିତାରେ ବୈଷ୍ଣବୀୟ ରାଧାତତ୍ତ୍ୱ ବିକାଶ ଲାଭ କଲା । ରବୀନ୍ଦ୍ରନାଥ ତାଙ୍କର ଅଧିକାଂଶ କବିତାରେ ମନୁଷ୍ୟର ଆତ୍ମାକୁ ପ୍ରେମିକ ବୋଲି ପରିକଳ୍ପନା କରିଛନ୍ତି । କିନ୍ତୁ ତାଙ୍କ କବିତାରେ ପ୍ରେମିକ ଅଜଣା, ଅଦେଖା ଓ ଅସୀମ । ଏହି ରହସ୍ୟ ଯୋଗୁଁ ସେଥିରେ ନୂତନ ପ୍ରକାରର ଚମତ୍କାରିତା ସନ୍ନିହିତ ହୋଇଛି । ବିବିଧ ଦୃଷ୍ଟିଭଙ୍ଗୀରେ ଆତ୍ମା ପରମାତ୍ମାଙ୍କର ଏହି ରହସ୍ୟମୟ ପ୍ରେମଲୀଳା ସଦୃଶ ସମ୍ପର୍କ ଭଙ୍ଗିରେ ବର୍ଣ୍ଣନା କରାଯାଇଛି । କବିତାରେ କଳ୍ପନା ସହିତ ବୌଦ୍ଧିକତାର ସମନ୍ୱୟ ହିସାବରେ ରବୀନ୍ଦ୍ରନାଥଙ୍କର ଏ ନୂତନ ଦୃଷ୍ଟିଭଙ୍ଗୀ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ; କାରଣ ପରବର୍ତ୍ତୀ କାଳରେ ଯେଉଁ ବୁଦ୍ଧିସମ୍ପର୍କୀୟ କବିତାର ଉଦ୍ଭବ ହେଲା, ତାର ପୂର୍ବବର୍ତ୍ତୀ ଯୁଗର ଏ କବିତା ସେଥିପାଇଁ ପଥ ସୃଷ୍ଟି କରିଗଲା ।

ସପ୍ତମ ଶତାବ୍ଦୀରେ ଓଡ଼ିଶାରେ ବଜ୍ରଯାନୀ ସିଦ୍ଧମାନଙ୍କର କବିତାମାନଙ୍କରେ ମଧ୍ୟ ଏହି ରହସ୍ୟବାଦୀ ସ୍ୱର ଶୁଣାଯାଉଥିଲା । ଯେ ଅପହଞ୍ଚ, ଯେ ଏହି ଦେହ ମଧ୍ୟରେ ଥାଇ ସୁଦ୍ଧା ନିଜେ ଶୂନ୍ୟମୟ ବିଶ୍ୱ, ଯେଉଁଠି ଶବ୍ଦ ନାହିଁ କି ଆଲୋକ ନାହିଁ କି ଅନ୍ଧାର ନାହିଁ, ତାରା ନାହାନ୍ତି କି ସୂର୍ଯ୍ୟ ନାହିଁ, ତାଙ୍କୁ ସେହି କବିମାନେ ଆପଣା ଆପଣା ଉପାୟରେ କଳିବାକୁ ପ୍ରୟାସ କରିଥିଲେ । ସେମାନଙ୍କ ପରିକଳ୍ପନାରେ ଥିଲା ଯେ ବ୍ୟାପ୍ତି ଭିତରେ ସୂକ୍ଷ୍ମତର ହୋଇ ଆହୁରି ଗୋଟିଏ ବ୍ୟାପ୍ତି ଅଛି ଓ ସେସବୁ ଆବୃତ୍ତ କରି ରହିଛି । ପରବର୍ତ୍ତୀ କାଳରେ ଶୂନ୍ୟବାଦୀ ଦର୍ଶନରେ ଏହି ପରିକଳ୍ପନା ପରମାତ୍ମା ଅର୍ଥାତ୍ 'ଅସୀମ'କୁ ପ୍ରେମିକ ବୋଲି ପରିକଳ୍ପନା କରି ଆତ୍ମା ଓ ଅସୀମଙ୍କ ମଧ୍ୟରେ ଯେଉଁ ପ୍ରେମଲୀଳାର ବିନ୍ୟାସ କରିଛନ୍ତି, ସେହି ବିଷୟବସ୍ତୁ ସହିତ ରବୀନ୍ଦ୍ରନାଥଙ୍କ ଜନ୍ମର ବହୁ ପୂର୍ବରୁ ଓଡ଼ିଶାର ଘନିଷ୍ଠ ପରିଚୟ ରହି ଆସିଥିଲା । ସେହି ବିଷୟବସ୍ତୁକୁ ଆପଣା କବିତାରେ ରବୀନ୍ଦ୍ରନାଥ ଯେଉଁ ପ୍ରକାରରେ ପରିବର୍ତ୍ତିତ କଲେ, ସେତିକି ସେଥିରେ ନୂଆ କଥା । ସେହି ପ୍ରାଚୀନ ପାରମ୍ପରିକ ବିଷୟବସ୍ତୁରେ ଯାହା ସ୍ଥାନୀୟ ଓ ଦୈହିକ ହୋଇ ଆଗରୁ ନିର୍ଦ୍ଦିଷ୍ଟ ହୋଇ ରହିଥିଲା, ରବୀନ୍ଦ୍ରନାଥଙ୍କ କବିତାରେ ତାହାର ପରିବର୍ତ୍ତନ ଘଟିଥିଲା । ସେ ଏହି ଭାବ ବ୍ୟକ୍ତ କଲେ ଯେ ପରମେଶ୍ୱର

ଅର୍ଥାତ୍ 'ଅସୀମ' ସର୍ବତ୍ର ବିରାଜମାନ; ତେଣୁ ତାଙ୍କ ସହିତ ମିଳିତ ହେବାକୁ ଲୋଡ଼ିଲେ, ସେ ମିଳନ ଭିତରେ ବା ବାହାରେ ଘଟିପାରେ; ସେଥିସକାଶେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ନାହିଁ କି ସେ ମିଳନ ଦୈହିକ ନୁହେଁ, ତାହା ଆଧ୍ୟାତ୍ମିକ । ପ୍ରେମିକାର ହୃଦୟର ଯେଉଁ ଗଭୀର ଆକୁଳତା ବୈଷ୍ଣବ କବିମାନଙ୍କ କବିତାବଳୀରେ ପ୍ରକଟିତ ହୋଇଛି, ରବୀନ୍ଦ୍ରନାଥଙ୍କ କବିତାରେ ମଧ୍ୟ ପ୍ରେମିକାରୂପକ ଆତ୍ମାର ସେହିପରି ଗଭୀର ଆକୁଳତା ପ୍ରକାଶ ପାଇଛି; କେତେବେଳେ ସେ ପ୍ରେମିକା ମିଳନ ପାଇଁ ପ୍ରତୀକ୍ଷମାଣା, କେତେବେଳେ ସେ ବିରହବିଧୁରା; କେତେବେଳେ ଅବା ପରମୋଲ୍ଲାସରେ ଉତ୍ଫୁଲ୍ଲା ଆହୁରି ବଢ଼ି ବଢ଼ି ଉଠିଥିଲା ଓ ଅକାର ମକାର ଆଦି ସଂକେତମୟ କବିତାମାନଙ୍କରେ ଓଡ଼ିଶାର ସାଧକ-କବିମାନଙ୍କ କଣ୍ଠରେ ତାହା ପରିସ୍ଫୁଟ ହୋଇଥିଲା । ମହାପୁରୁଷ ଅଚ୍ୟୁତାନନ୍ଦଙ୍କ କବିତାରେ ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱାନ୍ୱେଷୀ ସବୁ ସାଧକଙ୍କ କବିତାରେ ସର୍ବଦା ଏ ପରିକଳ୍ପନା ରହିଥିଲା ଓ ଏହା ଯୋଗୁଁ ଯେଉଁ ବିଶିଷ୍ଟ ରହସ୍ୟବାଦର ଉତ୍ପତ୍ତି ହୁଏ, ତାହା ମଧ୍ୟ ରହିଥିଲା । ଅଷ୍ଟାଦଶ ଶତାବ୍ଦୀର କବି ସନ୍ଥ ଭୀମଭୋଇଙ୍କ କବିତାମାନଙ୍କରେ ମଧ୍ୟ ଏହା ପରିସ୍ଫୁଟ । ପକ୍ଷାନ୍ତରରେ ଯେଉଁ କବିମାନେ ଧର୍ମତତ୍ତ୍ୱ ସାଧନାରେ ନିରତ ହୋଇ ରହି ନ ଥିଲେ ସେମାନେ ପ୍ରାୟଶଃ ଏପରି ବିଷୟବସ୍ତୁର ଅବତାରଣା କରୁ ନ ଥିଲେ । ଓଡ଼ିଶାର ସାଧକ କବିମାନେ ଅନନ୍ତ ଅସୀମ ପରମାତ୍ମାଙ୍କ ସମ୍ପର୍କରେ ଅନେକ କବିତା ସୃଷ୍ଟି କରିଥିଲେ; କିନ୍ତୁ କ୍ୱଚିତ୍ ସେମାନେ ସେହି ପରମେଶ୍ୱରଙ୍କୁ ଅରୂପ ବୋଲି ବର୍ଣ୍ଣନା କରୁଥିଲେ । ପ୍ରାୟ ୧୬୦ ବର୍ଷ ତଳେ ପୁରୀଜିଲ୍ଲା ଡେଲାଙ୍ଗ ନିକଟସ୍ଥ ପ୍ରସିଦ୍ଧ ବେଣୁପଡ଼ା ମଠର ମାଟିପନ୍ଥୀ ସିଦ୍ଧ ଆରତ ଦାସ କବି ଗାଇଥିଲେ—

"ତୁ ଗୁହାଁ ହୋ ଗ୍ୟାନୀ, ଗ୍ୟାନ-ଲୋଚନ ବାଗେ
ଚର୍ମ-ନୟନକୁ ରୂପ ନ ଦିଶଇ ଖେଳୁଛି ନୟନ ଆଗେ ।"

ଓଡ଼ିଆ କବିମାନଙ୍କ କବିତାରେ ଥିଲା ବୈଷ୍ଣବୀୟ ଭଙ୍ଗୀ ଓ ଶୂନ୍ୟବାଦୀ ଭଙ୍ଗୀ; କିନ୍ତୁ ଏ ଉଭୟ ଭଙ୍ଗୀର ସମ୍ମିଶ୍ରଣ କେବଳ ରବୀନ୍ଦ୍ରନାଥଙ୍କ କବିତାରେ ଦେଖିବାକୁ ମିଳେ । ଅନ୍ତରର ନିଭୃତତମ ପ୍ରଦେଶରେ ପାଖେ ରହସ୍ୟମୟ ଅଜ୍ଞାତ ଓ ଆର ପାଖେ ଅତି ପରିଚିତ ଜଣେ । ଏ ଦୁଇ ପରିକଳ୍ପିତ ସ୍ୱରୂପ ଏକ ଓ ଅଭିନ୍ନ ହୋଇ ମିଶି ଯାଆନ୍ତି ।

ରବୀନ୍ଦ୍ରନାଥ ପୂର୍ବ ଓ ପଶ୍ଚିମର ବିରାଟ ସମନ୍ୱୟ । କିନ୍ତୁ ତାଙ୍କ କଣ୍ଠରେ ପ୍ରାଚୀନ ଭାରତର ଆତ୍ମା ହିଁ କଥା କହୁଥିଲା । ବେଦ ଓ ଉପନିଷଦମାନଙ୍କରୁ ସେ ବହୁତ ଆହରଣ କରିଥିଲେ ଓ ପୁଷ୍ଟି ଭାରତୀୟ ଆଧ୍ୟାତ୍ମିକ, ସାଂସ୍କୃତିକ ପରମ୍ପରାର ବିଶାଳ ଭଣ୍ଡାରରୁ । ଭାରତୀୟ ସଂସ୍କୃତି ଭାରତବ୍ୟାପୀ ଓ ତାହା ସାର୍ବଜନୀନ । ଭାରତର ଦୂର ଦୂର ପ୍ରାନ୍ତମାନଙ୍କ ମଧ୍ୟରେ ବି ସେହି ସାଂସ୍କୃତିକ ପରମ୍ପରା

ବିଦ୍ୟମାନ ଥିବାରୁ ସେମାନଙ୍କ ମଧ୍ୟରେ ଭାଷା ନିର୍ବିଶେଷରେ ପରସ୍ପର ସହିତ ସାଦୃଶ୍ୟ, ସମତା ଓ ଐକ୍ୟ ରହିଛି । ଅତଏବ ରବୀନ୍ଦ୍ରନାଥଙ୍କ ଜନ୍ମର ଶହ ଶହ ବର୍ଷ ପୂର୍ବରୁ ତାଙ୍କ ଶିଳ୍ପୀ ସ୍ୱରୂପର ଗୋଟିଏ ଅଂଶରେ ଭାରତର ଅନ୍ୟାନ୍ୟ ପ୍ରାନ୍ତରେ ରହୁଥିବା ବ୍ୟକ୍ତିମାନଙ୍କ ସହିତ ତାଙ୍କର ଐକ୍ୟ ରହି ଆସିଥିଲା । ଗୋଟିଏ ଉଦାହରଣ ଦିଆଯାଇ ପାରେ—"ଭେଙ୍ଗେଛେ ଦୁଆର ଏସେଛ୍ଛ ଜ୍ୟୋତିର୍ମୟ" ହୋଇ ଆରମ୍ଭ ହୋଇ ରବୀନ୍ଦ୍ରନାଥଙ୍କର ଯେଉଁ ପଦ୍ୟଟି ଅଛି, ଦଶମ ଶତାବ୍ଦୀରେ ଓଡ଼ିଶାର ମହାକବି ସାରଳାଦାସଙ୍କ ତାଳପତ୍ର ଲେଖା ଓଡ଼ିଆ ମହାଭାରତ ସଭାପର୍ବରେ ଥିବା ସୂର୍ଯ୍ୟ-ବନ୍ଦନା ସହିତ ତାର ବିସ୍ମୟକର ସାଦୃଶ୍ୟ ପରିଲକ୍ଷିତ ହୁଏ । ଉଦୀୟମାନ ସୂର୍ଯ୍ୟଙ୍କୁ ସାରଳାଦାସ "ତିମିର ବିଦାରଣ" ବୋଲି ବର୍ଣ୍ଣନା କରିଥିବା ସ୍ଥଳେ ପ୍ରାୟ ଏକ ସହସ୍ର ବର୍ଷ ଉତ୍ତାରୁ ରବୀନ୍ଦ୍ରନାଥ ମଧ୍ୟ "ତିମିର-ବିଦାର" ବୋଲି ବର୍ଣ୍ଣନା କରିଛନ୍ତି । ସ୍ଥାନ ଓ ସମୟ ଦୃଷ୍ଟିରୁ ଦୂର ଦୂର ଏହି ଉଭୟ କବି ସୂର୍ଯ୍ୟୋଦୟକୁ ଦେଖି ଆଲୋକ ଅନ୍ଧାରକୁ ନଖରେ ଭିଣିଭିଣା କରୁଥିବା ଚିତ୍ର ପରିକଳ୍ପନା କରି ରୂପକ ସୃଷ୍ଟି କରିଛନ୍ତି । ପୁଣି ଏ ଉଭୟ କବି ସୂର୍ଯ୍ୟଙ୍କୁ ରୁଦ୍ର ବା ଶିବ ରୂପରେ ହିଁ ଦେଖିଛନ୍ତି । ସାରଳାଦାସ ସେହି ବନ୍ଦନାରେ ସୂର୍ଯ୍ୟଙ୍କୁ କହିଛନ୍ତି—"ଜୟ ରୁ ଗଗନଲିଙ୍ଗ" । ରବୀନ୍ଦ୍ରନାଥ ସୂର୍ଯ୍ୟଙ୍କୁ କହିଛନ୍ତି—"ପ୍ରଭାତ ସୂର୍ଯ୍ୟ ଏସେଛ୍ଛ ରୁଦ୍ରସାଜେ ।" ପୁଣି ଏଉଭୟ କବି ସୂର୍ଯ୍ୟ ଓ ଶିବଙ୍କୁ ଅଭିନ୍ନ ଭାବି ତାଙ୍କର କଲ୍ୟାଣକର ପରହିତକାରୀ ରୂପକୁ ଧ୍ୟାନ କରିଛନ୍ତି ।

ଭଗବାନଙ୍କୁ କବିତାର ବିଷୟୀଭୂତ କରି ଭଗବତ୍ ପ୍ରେମ ଓ କରୁଣା ପାଇବା ପାଇଁ ଆର୍ତ୍ତ ଭକ୍ତର ଆକୁଳତା ପ୍ରକଟାଇ ଯେଉଁ ଭାବଗୀତ ରଚିତ ହୁଏ, ଓଡ଼ିଶାରେ ତାର ପରମ୍ପରା ଅତି ପ୍ରାଚୀନ । ଓଡ଼ିଆରେ ସେହି ଶ୍ରେଣୀର କବିତାକୁ 'ଜଣାଣ' କୁହାଯାଏ । ଓଡ଼ିଆ ଭାଷାରେ ସେପରି କବିତା ଅସଂଖ୍ୟ । ଗଭୀର ଆଧ୍ୟାତ୍ମିକ ଭାବପୂର୍ଣ୍ଣ ଓଡ଼ିଆ ଜଣାଣମାନ ଅତି ପ୍ରାଣସ୍ପର୍ଶୀ । ସେଥିରେ କେତେବେଳେ ଲୌକିକାଦ୍ର ବେଦନା ପ୍ରକାଶ ପାଏ, କେତେବେଳେ ଆନନ୍ଦାତିଶଯ୍ୟର ଚରମ ଉଲ୍ଲାସ ପ୍ରକାଶ ପାଏ । କେବଳ ଓଡ଼ିଆ ମହାକବିମାନଙ୍କ କବିତା ନୁହେଁ, ନାନା ସାଧକ ଓ ଗୃହୀ ସାଧାରଣ କବିଙ୍କ ରଚନାରେ ସେପରି ଜଣାଣମାନ ଦେଖିବାକୁ ମିଳେ । କିନ୍ତୁ ସେପରି ଅଧିକାଂଶ କବିତାରେ ଦେଖାଯାଏ ଯେ ତହିଁରେ ଅଦୃଶ୍ୟ ଭଗବାନ ଅରୂପ କି ଅସମ୍ପୃକ୍ତ ନୁହନ୍ତି, ସଂସ୍କାରଗତ ଧର୍ମରେ ତାଙ୍କର ଅଲୌକିକ ମହିମାମୟ କାର୍ଯ୍ୟାବଳୀର ଯେଉଁ ଧାରଣା ନିହିତ ରହିଛି ଓ ସେ ବିଭିନ୍ନ ଅବତାର ପରିଗ୍ରହ କରି ଯେଉଁ ଅବତାରରେ ଯେଉଁ କାର୍ଯ୍ୟ କରିଗଲେ ବୋଲି ବର୍ଣ୍ଣନା କରାହୋଇଛି, ଓଡ଼ିଆ ଜଣାଣମାନଙ୍କରେ ବର୍ଣ୍ଣିତ ଭଗବାନ ସେ ଲୀଳା, ମହିମା ଓ କାର୍ଯ୍ୟାବଳୀ ସହିତ ସଂଶ୍ଳିଷ୍ଟ ହୋଇ ରୂପାୟିତ ହୋଇଛନ୍ତି ।

କିନ୍ତୁ ଭଗବାନଙ୍କୁ ପୌରାଣିକ ଅଲୌକିକ ଅଦ୍ଭୁତ କାର୍ଯ୍ୟମାନଙ୍କ ସହିତ ସଂପୃକ୍ତ ନ କରି ପରିକଳ୍ପନା କରିବା ଓ ପଶ୍ଚାତ୍ତରରେ ଭଗବାନଙ୍କୁ ନିର୍ଗୁଣ ଶୂନ୍ୟବ୍ରହ୍ମ ବୋଲି ପରିକଳ୍ପନା ନ କରିବା, ଏ ଉଭୟ ଧାରଣାର ସମାବେଶ ଊନବିଂଶ ଶତାବ୍ଦୀରେ ବ୍ରାହ୍ମସମାଜର ଅଭ୍ୟୁଦୟ ହେବା ପୂର୍ବରୁ ଓଡ଼ିଆ ସାହିତ୍ୟରେ କ୍ୱଚିତ୍ ଦୃଷ୍ଟିଗୋଚର ହୁଏ ।

ଓଡ଼ିଆ ଉପନ୍ୟାସର ଜନକ ବ୍ୟାସକବି ଫକୀରମୋହନ ଏକାଧାରରେ ପ୍ରସିଦ୍ଧ ଔପନ୍ୟାସିକ ଓ ପ୍ରସିଦ୍ଧ କବି ଥିଲେ । ତାଙ୍କର କାବ୍ୟକବିତାର ସୃଷ୍ଟି ମଧ୍ୟ ବିଶାଳ । ଫକୀରମୋହନ ନିଜ ଆତ୍ମଜୀବନୀରେ ଲେଖିଛନ୍ତି ଯେ ୧୮୬୭ କି ୧୮୬୮ ଖ୍ରୀ:ଅ: ରେ ଶ୍ରୀ ପ୍ରସନ୍ନକୁମାର ଭଟ୍ଟାଚାର୍ଯ୍ୟ ବୋଲି ଜଣେ ବ୍ରାହ୍ମଧର୍ମ ପ୍ରଚାରକ ବାଲେଶ୍ୱରକୁ ଆସିଥିଲେ ଓ ଫକୀରମୋହନଙ୍କ କବିତାକୁ ବହୁତ ପ୍ରଶଂସା କରି କହିଥିଲେ ଯେ ତାଙ୍କ କବିତାଗୁଡ଼ିକ ସାଧକର କବିତା । ମଧ୍ୟଯୁଗୀୟ ଓଡ଼ିଆ କବିତାରେ ଯେଉଁ କାମ୍ୟିକ ପ୍ରେମର ପ୍ରାୟଶଃ ବର୍ଣ୍ଣନା ଦେଖାଯାଏ, କବିବର ରାଧାନାଥ ରାୟ ଓ ତାଙ୍କ ଗୋଷ୍ଠୀର ଅନ୍ୟାନ୍ୟ କବିମାନେ ତାର ନିନ୍ଦା କରିଥିଲେ ହେଁ ରାଧାନାଥ ତାଙ୍କ ନିଜ କବିତାରେ କବିତାର ବିଷୟବସ୍ତୁ ହିସାବରେ ଦୈହିକ ପ୍ରେମକୁ ବର୍ଜ୍ଜନ କରିନାହାନ୍ତି । ସେ ତାର କାମନାକୁ ବର୍ଣ୍ଣନା କରିଛନ୍ତି ଓ ସାଧାରଣତଃ ତାର ଦୈହିକ ବିଶଦବର୍ଣ୍ଣନାକୁ ବର୍ଜନ କରିଛନ୍ତି । କିନ୍ତୁ ମଧୁସୂଦନ ରାଓ ଊନବିଂଶ ଶତାବ୍ଦୀର ସେହି ତାତ୍କାଳିକ ଆଧୁନିକମାନଙ୍କ ସମ୍ପ୍ରଦାୟଭୁକ୍ତ ଥାଇ ଅପଣାର ମତ ଓ ବିଶ୍ୱାସ ପ୍ରତି ସଚୋଟ ରହି କେବଳ ଆଧ୍ୟାତ୍ମିକ ବିଷୟରେ ବ୍ୟାପୃତ ଥିଲେ । ତାଙ୍କ କବିତାମାନଙ୍କରେ ଗଭୀର ଆଧ୍ୟାତ୍ମିକତା ଅଛି, ଋଷିସୁଲଭ ପବିତ୍ରତା ଅଛି । ନିରାଡ଼ମ୍ବର ନିରାଟ ସରଳତା ଓ ସ୍ୱତଃସ୍ଫୁର୍ତ୍ତି ପ୍ରଶାନ୍ତି, ଈଶ୍ୱରଙ୍କ ସହିତ ଏକ ହୋଇଯିବା ଭାବ ତାଙ୍କ କବିପ୍ରତିଭାର ସ୍ୱରୂପ । ତାଙ୍କ କବିତା ଓଡ଼ିଶାଯାକ ଭେଦିଯାଇଛି ଓ ସର୍ବତ୍ର ତାକୁ ଲୋକେ ସ୍ତବ ବୋଲି ଗାଆନ୍ତି ।

ତାଙ୍କର 'ଧ୍ୱନି' କବିତାରେ ପୃଥିବୀରେ ସୁଖ କି ଦୁଃଖର, କୋମଳ କି କଠୋର ଏହିପରି ନାନା 'ଧ୍ୱନି' ମଧ୍ୟରେ ସେ ଐଶ୍ୱରିକ ଧ୍ୱନି ଶୁଣିବାକୁ କାନ ଡେରିଛନ୍ତି । ସେ କହୁଛନ୍ତି:—

"ଏହିମତେ କୋଟି କୋଟି ଶବ୍ଦେ ପୂର୍ଣ୍ଣ
ଅନୁକ୍ଷଣ ଏ ଅବନୀ,
କିନ୍ତୁ ଶୁଣିଛ କି ସେହି ଆଦିମୂଳ
ଅନାଦି ପରମ ଧ୍ୱନି ?
ରୋମାଞ୍ଚ-ପୂରିତ ପୁଲକିତ ଦେହେ
ଶୁଣ ଶୁଣ ବିଶ୍ୱଜନେ,
ବିଶ୍ୱ ରନ୍ଧ୍ରେ ରନ୍ଧ୍ରେ ସେ ପରମ ଧ୍ୱନି
ଉଚ୍ଛ୍ୱସିତ ସଂଗୋପନେ ।"

ନଦୀ ପ୍ରତି କବିତାରେ ସେହି ଧ୍ୱନି ଶୁଣି ନଦୀ ତୀର ଗୁମ୍ଫା ଗର୍ଭୀରରୁ ବାହାରି ଆସିଛି। କେହି କେହି କହିଥାନ୍ତି ଯେ ଏ କବିତାରେ ସେ ରବୀନ୍ଦ୍ରନାଥଙ୍କର 'ନଦୀ' ଓ ନିର୍ଝରେର ସ୍ୱପ୍ନଭଙ୍ଗ" କବିତା ଯୋଡ଼ିକ ଦ୍ୱାରା ପ୍ରଭାବିତ ହୋଇଛନ୍ତି; କିନ୍ତୁ ଏପରି ଭାବିବା ସତ୍ୟ ହୋଇ ନ ପାରେ ।

ବ୍ରାହ୍ମଦର୍ଶନ ସହିତ ଘନିଷ୍ଠ ସଂପର୍କ ଥାଇ ଉପନିଷଦମାନଙ୍କରୁ ସେ ତାଙ୍କର ଦିବ୍ୟଦୃଷ୍ଟି ପାଇଥିଲେ । ରବୀନ୍ଦ୍ରନାଥ ଓ ତାଙ୍କ ଭିତରେ ଯେଉଁ ପାର୍ଥକ୍ୟ, ତାହା ପରିଷ୍କାର ବାରି ହୋଇପଡ଼େ । ଅସୀମ ପରମେଶ୍ୱରଙ୍କ ସହିତ ଆପଣାର ସଂପର୍କକୁ ସେ ପ୍ରଣୟିନୀ ଓ ପ୍ରଣୟୀଙ୍କ ସଂପର୍କ ବୋଲି ଧାରଣା କରି ନ ଥିଲେ । ପ୍ରଣୟିନୀ ଓ ପ୍ରଣୟୀଙ୍କ ସଂପର୍କରୁ ଯେଉଁ ବେଦନା ବା ଉଲ୍ଲାସର ଅବତାରଣା ହୁଏ, ତାଙ୍କ କବିତାରେ ତାହା ନାହିଁ । ତାଙ୍କ କବିତାରେ ରବୀନ୍ଦ୍ରନାଥଙ୍କ ପ୍ରଭାବର ଚିହ୍ନମାତ୍ର ନାହିଁ; କିନ୍ତୁ ତାଙ୍କ କବିତାରେ ଯେଉଁ ଗଭୀର ଆଧ୍ୟାତ୍ମିକତା ଅଛି, ସେଥିଯୋଗୁଁ ତାଙ୍କ ପରବର୍ତ୍ତୀ ଅନ୍ୟସବୁ କବିଙ୍କ ଅପେକ୍ଷା ସେ ଆତ୍ମାରେ ରବୀନ୍ଦ୍ରନାଥଙ୍କ ନିକଟତମ ।

ବିସ୍ତୃତ-ସ୍ତରରେ ଏହି ଯେଉଁ ମହାପୁରୁଷମାନେ ଓଡ଼ିଆ-ସାହିତ୍ୟରେ ରବୀନ୍ଦ୍ରନାଥଙ୍କ ପୂର୍ବଗାମୀ. ସେମାନଙ୍କ ବିଷୟରେ ଏଠି କିଛି କହିବାର କାରଣ ହେଉଛି, ଓଡ଼ିଆ ସାହିତ୍ୟ ଉପରେ ରବୀନ୍ଦ୍ରନାଥଙ୍କ ପ୍ରଭାବ କେଉଁଠି ପଡ଼ିଛି ଓ ତାର ପରିସର କେତେ, ସେତିକ ନିର୍ଣ୍ଣୟ କରିବାକୁ ଚେଷ୍ଟା କରିବା । ସାହିତ୍ୟର ପ୍ରତ୍ୟେକ ବିଭାଗରେ ରବୀନ୍ଦ୍ରନାଥ ଅତି ଅସାମାନ୍ୟ ବହୁମୁଖୀ ପ୍ରତିଭାସଂପନ୍ନ; କିନ୍ତୁ ଓଡ଼ିଆ ଗଦ୍ୟ-ସାହିତ୍ୟ ଉପରେ ତାଙ୍କ ଗଦ୍ୟ ସାହିତ୍ୟର କୌଣସି ପ୍ରଭାବ ପଡ଼ିଲା ନାହିଁ । ତାଙ୍କର ଉପନ୍ୟାସମାନ, ଗଳ୍ପଗୁଡ଼ିକ, ନାଟକ ଓ ପ୍ରବନ୍ଧମାନ ଓଡ଼ିଆ ଲେଖକଙ୍କ ଉପରେ କୌଣସି ପ୍ରଭାବ ପକାଇଲା ନାହିଁ । ଓଡ଼ିଶାରେ ସେଗୁଡ଼ିକୁ ବେଶି ଲୋକେ ପଢ଼ନ୍ତି ବି ନାହିଁ । କେବଳ ପଦ୍ୟରେହିଁ ତାଙ୍କର ପ୍ରଭାବକୁ ପ୍ରଣିଧାନ କରିହେବ; କିନ୍ତୁ ଭାବଗୀତି ରଚନା କରିଥିବା କବିମାନଙ୍କୁ ତାଙ୍କର ଛନ୍ଦ ଓ ବୃତ୍ତି ଯେଉଁ ନୂଆ ଗ୍ରନ୍ଥର ନମୁନା ଦେଖାଇଲା, ସେତିକ ଛାଡ଼ିଦେଲେ ତାଙ୍କ ପ୍ରଭାବ ବି ଅଧିକ ନୁହେଁ । ସେହି ସମୟରୁ ଲଗାଇ ଯେଉଁ ବହୁସଂଖ୍ୟକ କବି ବାହାରିଛନ୍ତି, ଭାବ ବା ଭାଷାରେ କେବଳ ଛଅ ସାତ ଜଣ କବିଙ୍କଠାରେ ରବୀନ୍ଦ୍ରନାଥଙ୍କ ପ୍ରଭାବ ଦେଖାଯାଏ; ସେ ପ୍ରଭାବ ଗଭୀର ବି ନୁହେଁ, ଦୀର୍ଘକାଳସ୍ଥାୟୀ ବି ନୁହେଁ, ଅଳ୍ପଦିନେ ସେ ପ୍ରଭାବ ଉଭେଇ ଗଲା । ଏପରି କାହିଁକି ହେଲା, ତାହା ଜାଣିବାକୁ ହେଲେ କି ପୃଷ୍ଠଭୂମିରେ ରବୀନ୍ଦ୍ରନାଥଙ୍କ ବାଣୀ ଓଡ଼ିଶାରେ ପହଞ୍ଚିଲା, ସେତେବେଳେ ଓଡ଼ିଆ-ସାହିତ୍ୟରେ କି କି ପ୍ରବଣତାର ପ୍ରାଧାନ୍ୟ ଥିଲା, ଓଡ଼ିଆ-ସାହିତ୍ୟର ପାରଂପରିକ ମତ ଗତି କରି, ଓଡ଼ିଆ ପାଠକମାନଙ୍କର ପାରମ୍ପରିକ ରୁଚି କିପରି, ଏସବୁ ଜାଣିବା ଦରକାର । ଓଡ଼ିଶାରେ ବେଶି ଲୋକ ବଂଗଳା କବିତା ପଢ଼ନ୍ତି ନାହିଁ; କିନ୍ତୁ କାରଣ ଖାଲି ସେତିକ ନୁହେଁ ।

୧୯୧୩ ସାଲରେ ରବୀନ୍ଦ୍ରନାଥଙ୍କୁ ନୋବେଲ ପୁରସ୍କାର ଦିଆଯାଇଥିଲା ଓ ଦାସତ୍ୱ ଶୃଙ୍ଖଳାରେ ବନ୍ଧାହୋଇ ରହିଥିବା ଗୋଟିଏ ଦେଶରେ ସେହି ଯେଉଁ ପ୍ରତିଭାଶାଳୀ ଲେଖକ ସମଗ୍ର ପୃଥିବୀରେ ଖ୍ୟାତି ଅରଜିଲେ, ସେ ପୁରସ୍କାର ପାଇବା ସଙ୍ଗେ ସଙ୍ଗେ ପୃଥିବୀଯାକର ଲୋକଙ୍କର ନଜର ତାଙ୍କର ଆଡ଼କୁ ମୋଡ଼ିହେଲା । ସେ ଥିଲେ ଭାରତୀୟ ଜାତୀୟ ଆନ୍ଦୋଳନର ବଳବାନ୍ ସମର୍ଥକ, ସେ ଗୋଟିଏ ନୂଆ ଭାଷାରେ କଥା କହିଲେ; ସେ ଭାଷା ବିଶ୍ୱଜନୀନତା ଓ ମହତ୍ତ୍ୱ ଆଦର୍ଶର । କିନ୍ତୁ ସେତେବେଳକୁ ମଧୁସୂଦନ, ରାଧାନାଥ, ଗଙ୍ଗାଧର, ଫକୀରମୋହନ ଓ ତାଙ୍କ ପଛେ ପଛେ ସ୍ୱନାମଧନ୍ୟ କବି ନନ୍ଦକିଶୋର ବଳ ଏହି କବିଗୁରୁମାନଙ୍କର ମହାନ୍ ଓ ଅମର କୃତିମାନଙ୍କରେ ଓଡ଼ିଆ କବିତାରେ ସୁମହାନ୍ ସୃଷ୍ଟି ଗୁଡ଼ିକ ହୋଇସାରିଥିଲା । ସେମାନେ ଯେଉଁ ଗ୍ରନ୍ଥର ନମୁନା ଥୋଇ ଗଲେ, ତାହାହିଁ ହୋଇଥିଲା ସବୁଠାରୁ ବେଶି ଆଦରଣୀୟ । ଊନବିଂଶ ଶତାବ୍ଦୀର ଶେଷଆଡ଼କୁ ଏପରି କିଛି ଘଟନା ଘଟିଥିଲା, ଯେଉଁଥିଲାଗି ଓଡ଼ିଆ ଭାଷା କିପରି ବଞ୍ଚିରହିବ, ସେଥିପାଇଁ ବାଧ୍ୟ ହୋଇ ଓଡ଼ିଆ-କବିମାନଙ୍କର ବ୍ୟାକୁଳ ଉତ୍କଣ୍ଠା ଜନ୍ମିଥିଲା । ଓଡ଼ିଆ ଭାଷାର ନିଜସ୍ୱ ଶୁଦ୍ଧତା ଓ ବୈଶିଷ୍ଟ୍ୟତାକୁ ଅତୁଟ ରଖିବା ପାଇଁ ସେମାନେ ଆପ୍ରାଣ ଉଦ୍ୟମ କରୁଥିଲେ ଓ ଓଡ଼ିଶା ଓ ତାର ପରଂପରା ଲାଗି ଗର୍ବ ଅନୁଭବ କରିବାକୁ ଓଡ଼ିଶାର ଲୋକଙ୍କୁ ଉଦ୍ଦୀପ୍ତ ଉଦ୍‌ବୋଧନ ଜଣାଉଥିଲେ । ତାହା ସଙ୍ଗେ ସଙ୍ଗେ ରାଧାନାଥଙ୍କ 'ଦରବାର' ଓ 'ମହାଯାତ୍ରା' କାବ୍ୟମାନଙ୍କରେ ବା ଗଙ୍ଗାଧର ମେହେରଙ୍କର 'ଭାରତୀଭାବନା' ଓ ଅନ୍ୟାନ୍ୟ କବିତାରେ ଯେପରି ଅଛି, ସେହିପରି ସେମାନେ ବିଦେଶୀ ଶାସନ ବିରୁଦ୍ଧରେ ବିଦ୍ରୋହ ପ୍ରଚାର କରୁଥିଲେ ଓ ଭାରତୀୟ ଏକତା ଉପରେ ଗୁରୁତ୍ୱ ଦେଉଥିଲେ । ୧୯୦୩-୪ରେ ସେକାଳର ଓଡ଼ିଶା ରାଜନୀତିକ୍ଷେତ୍ରରେ ମହାନ୍ ନେତା ମଧୁସୂଦନ ଦାସ ଯେତେବେଳେ ଖଣ୍ଡ ବିଖଣ୍ଡ ହୋଇ ପଡ଼ିରହିଥିବା ଓଡ଼ିଆଭାଷୀ ଅଞ୍ଚଳମାନଙ୍କର ଏକୀକରଣ ପାଇଁ ତାଙ୍କର ଉତ୍କଳ-ସମ୍ମିଳନୀ ଆନ୍ଦୋଳନ ଆରମ୍ଭ କରିଦେଲେ, ସେତେବେଳେ ଏହି ଉଦ୍ୟମ ଆହୁରି ପ୍ରେରଣା ପାଇଲା । ତାପରେ ୧୯୧୬ରେ ବିରାଟ ଜାତୀୟତା ଆନ୍ଦୋଳନର ପ୍ରତିଷ୍ଠା ହେଲା ଓ ତହିଁ ଉଠିଲେ ତାର ପ୍ରଧାନ ପ୍ରବର୍ତ୍ତକ ଓଡ଼ିଶାର ପ୍ରାତଃସ୍ମରଣୀୟ ଗାନ୍ଧିବାଦୀ ନେତା ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର ଓ ପଣ୍ଡିତ ନୀଳକଣ୍ଠ ଦାସ । ଏମାନେ ଓଡ଼ିଆ-ସାହିତ୍ୟରେ ପ୍ରସିଦ୍ଧ କବି । ସେମାନେ ସେମାନଙ୍କ ସହକର୍ମୀମାନଙ୍କ ସହିତ ମିଶି ସତ୍ୟବାଦୀ ଜାତୀୟ ବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ ଓ ସାହିତ୍ୟରେ ଗୋଟିଏ ନୂତନ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ, ଯାହାର ଓଡ଼ିଶା ଉପରେ ଅତି ଗଭୀର ପ୍ରଭାବ ପଡ଼ିଥିଲା । ଭାରତର ଏକତା ଓ ବିଦେଶୀର ଯୁଆଳିରୁ ମୁକ୍ତ ପାଇବାକୁ ବିଦ୍ରୋହ, ଚରିତ୍ର, ଆଚରଣ ଓ ବିଶ୍ୱରରେ ଭାରତର ପ୍ରାଚୀନ ମୂଲ୍ୟବୋଧ ଉପରେ ଅନୁପ୍ରାସ ଦେଇ ପ୍ରଚାର କରିବା ସଙ୍ଗେ ସଙ୍ଗେ ସେମାନେ ଓଡ଼ିଶା ଓ ତାର ସମସ୍ୟାମାନଙ୍କ ଉପରେ ପ୍ରବଳ ଗୁରୁତ୍ୱ ଦେଇ

ସାହିତ୍ୟ ସୃଷ୍ଟି କରିଥିଲେ ଓ ଓଡ଼ିଶା ପ୍ରତି ଜାତୀୟ ପ୍ରେମରେ ଓଡ଼ିଶାର ଦେଶବାସୀଙ୍କୁ ଉଦ୍‌ବୁଦ୍ଧ କରିଥିଲେ । ଗୋଦାବରୀଶଙ୍କର କବିତା "ରୁଦ୍ର ଶିଖରୀଚୂଳ" ଓ "ରକ୍ତିତ ଅସିଧାରେ" ଓଡ଼ିଶାର ପୁରପଲ୍ଲୀରେ ମୁଖରିତ ହେଲା ଓ ଉତ୍କଳମଣି ଗୋପବନ୍ଧୁ ଦାସ ତାଙ୍କର ମର୍ମସ୍ପର୍ଶୀ କବିତା "ବନ୍ଦୀର ଆତ୍ମକଥା"ରେ ଗାଇଲେ—

"ଦେଖିଛୁ ଉତ୍କଳେ ଯେ ଦୃଶ୍ୟ ନୟନେ, ଉଦୟେ ତା ଭୂତ ପଦସ୍ୱେ ଶୟନେ ।
କେତେ କେତେ ଋଷି ଭଲ ଭଲ ଲୋକ, ନ ପା'ନ୍ତି ଦିବେଳା ପେଟପୂରି ଢୋକ ।
ଥିଲେ ଯେଉଁ ମଲ୍ଲ ଉତ୍କଳ ସୈନିକ, ପାଇକ-ପ୍ରଧାନ ମାଗୁଛନ୍ତି ଭିକ ।
ଦେହେ ନାହିଁ ମାଂସ ଦୋହଲୁଛି କଣ୍ଠା, ଅନାହାରେ ଆହା ନ ଉଠଇ ଅଣ୍ଟା !
ଅର୍ଜନ୍ତି ଯା ଭୁଣ୍ଡେ ମାରି ମୁଣ୍ଡଝାଳ, ଦୁଷ୍ଟ ମହାଜନ, ଗ୍ରାମ-କଣ୍ଟିଆଳ,
ପ୍ରଜାରକ୍ତ ଶୋଷି କେତେ ଜମିଦାର, ହରନ୍ତି ସର୍ବସ୍ୱ ବଜାଇ ପାହାର ।"

କବିତାରେ ଏହି ଯେଉଁ ସ୍ରୋତ ଚାଲିଥିଲା, ଯୋଉଁଏ ଗୁରୁତ୍ୱପୂର୍ଣ୍ଣ ପରିଣାମରେ ସେ ପ୍ରକଟିତ ହେଲା । ତହିଁରୁ ଗୋଟିଏ ହେଉଛି—ଓଡ଼ିଆ-କବିତାରେ ସାମାଜିକ ଚେତନା; ବସ୍ତୁତଃ ଓଡ଼ିଆ-କଳାର ଦୃଷ୍ଟିଭଙ୍ଗୀର ତାହା ହିଁ ବୈଶିଷ୍ଟ୍ୟ; ଓଡ଼ିଶାର ମନ୍ଦିରଗାତ୍ରର ଶିଳ୍ପକଳାରେ ତାହା ପ୍ରତିବିମ୍ବିତ ହୁଏ । ରକ୍ତମାଂସ-ବିବର୍ଜିତ ବିଶୁଦ୍ଧ ଆଦର୍ଶବାଦ ସେ ନୁହେଁ କି କେବଳ ବାସ୍ତବ ଚେତନା ସେ ନୁହେଁ । ସେ ଏ ଦୁଇ ପ୍ରକାର ଦୃଷ୍ଟିଭଙ୍ଗୀର ଏକତ୍ର ସମନ୍ୱୟ । ସେ ଦେଖାଏ ଯେ ଯେଉଁ ମନୁଷ୍ୟର ଗୋଟିଏ ବାସ୍ତବ ଓ ସ୍ଥାନୀୟ ପରିଚୟ ଅଛି, ତାହାର ଭିତରୁ ଅତି ଉନ୍ନତ ବିଶ୍ୱଜନୀନ ଆଦର୍ଶ ବାହାରି ରୂପ ନେଉଛି । ସାରଳାଦାସଙ୍କଠାରୁ ଆରମ୍ଭ କରି ସଚ୍ଚି ରାଉତରାୟଙ୍କ ପର୍ଯ୍ୟନ୍ତ ଏହି ଦୃଷ୍ଟିଭଙ୍ଗୀ ହିଁ ଓଡ଼ିଆ-ସାହିତ୍ୟରେ ଚାଲି-ଆସିଛି । ଅପର ପରିଣାମଟି ହେଉଛି—ଓଡ଼ିଶା ପାଇଁ ଗର୍ବ ଓ ଅନୁକରଣ କରିବା ଧାରଣା ପ୍ରତି ଘୃଣା । ଶହ ଶହ ବର୍ଷ ପୂର୍ବେ ବିଶ୍ୱଭ୍ରାତୃତ୍ୱ ଧାରଣାଟି ଜଗନ୍ନାଥ-ଧର୍ମରେ ପ୍ରତିଷ୍ଠିତ ହୋଇଥିଲା; କିନ୍ତୁ କ୍ୱଚିତ୍ ତାହା କାର୍ଯ୍ୟରେ ପରିଣତ ହୋଇଥିଲା । ଗାନ୍ଧୀବାଦ, ମାର୍କସ୍‌ବାଦ ଓ ତାପରେ ସର୍ବୋଦୟବାଦ ଆସିବା ସଙ୍ଗେ ସଙ୍ଗେ ସେହି ଧାରଣା ବର୍ଷକୁ ବର୍ଷ ବଢ଼ି ବଢ଼ି ଚାଲିଛି; କିନ୍ତୁ ଓଡ଼ିଶା ଯେତେବେଳେ ରବୀନ୍ଦ୍ରନାଥଙ୍କ ଆଡ଼କୁ ଅନାଇଲା, ସେତେବେଳେ ପ୍ରବଳ ହୋଇଥିଲା ପାରଂପରିକ ଓଡ଼ିଆ-ସାହିତ୍ୟ ପ୍ରତି ପ୍ରେମ ଓ ଓଡ଼ିଶାର ପରଂପରା ପ୍ରତି ଗଭୀର ଅନୁରକ୍ତି ଓ ତାହାହିଁ ଅନ୍ୟାନ୍ୟ କାରଣମାନଙ୍କ ମଧ୍ୟରୁ ଗୋଟିଏ, ଯେଉଁଥି ସକାଶେ ରବୀନ୍ଦ୍ରନାଥଙ୍କର ମହାନ୍ ପ୍ରତିଭା ପ୍ରତି ବହୁତ ସମ୍ମାନ ଥିଲେ ସୁଦ୍ଧା ଆପେ କବିତା ରଚନା କରିବା ସକାଶେ ତାଙ୍କ କବିତାମାନଙ୍କ ନମୁନାକୁ ଗ୍ରହଣ କରି ବ୍ୟବହାର କରିବାକୁ ତାଙ୍କ ପ୍ରତିଭାକୁ ଅଧିକାଂଶ ଲେଖକ ଗ୍ରହଣ କଲେ ନାହିଁ । ଏହା ସତ୍ତ୍ୱେ ଓଡ଼ିଆ-କବିତାର ପରଂପରାରେ ଯେଉଁ ଅକ୍ଷରବୃତ୍ତି ଛନ୍ଦ ଚାଲିଆସିଥିଲା, ତାକୁ ଚତୁର୍ଦ୍ଦଶ ଓ ପଞ୍ଚଦଶ ଶତାବ୍ଦୀରୁ ଆରମ୍ଭ କରି

ଯେଉଁ ଅତି ମଧୁର, କଳ୍ପ ଆସ୍ୱାଦ୍ୟ ଓଡ଼ିଆ-ଗ୍ରନ୍ଥ ଓଡ଼ିଆ-କବିତାର ବିଶିଷ୍ଟତା ହୋଇ ଆସିଥିଲା, ତାକୁ ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ମାତ୍ରାବୃତ୍ତି ଛନ୍ଦକୁ ଯେପରି ପରିବର୍ତ୍ତିତ କରି ବ୍ୟବହାର କରିଥିଲେ, ତାକୁ ଓ ତାଙ୍କ କବିତାର ଗଠନ-ପଦ୍ଧତିକୁ ଯେ ଓଡ଼ିଆ-କବିମାନେ ଅନୁସରଣ କରିବାକୁ ଲାଗିଲେ, ଏହା ହିଁ ରବୀନ୍ଦ୍ରନାଥଙ୍କ ପ୍ରତିଭା କେତେ ପ୍ରଶଂସନୀୟ ତାର ବିଶିଷ୍ଟ ନିଦର୍ଶନ ।

ଆଉ ଗୋଟିଏ କାରଣ ସତ୍ତ୍ୱେ ଯାହାର ପ୍ରଭାବ ପଡ଼ିଲା, ସେ ହେଉଛି ଇଂରେଜି ପଢ଼ି ନ ଥିବା ଗାଁଗହଳରେ ରହୁଥିବା ଓଡ଼ିଶାର ବେଶି ଭାଗ ପାଠକଙ୍କ ରୁଚି । ଓଡ଼ିଶାର ପାରଂପରିକ ସାହିତ୍ୟକୁ ସୁରକ୍ଷିତ ଓ ସୁପ୍ରଚାରିତ କରିଛନ୍ତି ସେହି ପାଲାକାରମାନେ, ଯେଉଁମାନେ ଶହ ଶହ ବର୍ଷ ହେଲା ଗାଁର ଶ୍ରମିକ ଓ କୃଷୀ-ମାନଙ୍କ ଆଗରେ ଅର୍ଥ, ରସ, ଅଳଂକାର ଓ ମଧ୍ୟଯୁଗୀୟ କାବ୍ୟମାନଙ୍କର ବିବିଧ ଗୁଣମାନଙ୍କ ତାତ୍ପର୍ଯ୍ୟର ଗହନ ଭେଦ ବ୍ୟାଖ୍ୟାନ କରି ଆପଣାର ଜୀବିକା ଅର୍ଜନ କରି ଆସିଛନ୍ତି । ଗ୍ରାମଲୋକେ ଭେଦାକରି ବାଦୀପାଲା କରନ୍ତି । ସେଥିରେ ଏହି କଳାର ଦୁଇ ଜଣ ପାଲାବାଲା ପ୍ରତିଦ୍ୱନ୍ଦିତା କରନ୍ତି । ପୁରାତନ ମହାକବିମାନଙ୍କ କୃତିରୁ ଉଦ୍ଧୃତାଂଶ ଗାଇ ତାର ଅର୍ଥ ବୁଝାନ୍ତି ଓ ଆଲୋଚନା ବଖାଣନ୍ତି । ଏ କାର୍ଯ୍ୟ ରାତିରାତି ଦିନଦିନ ଲାଗି ରହେ ଓ ତାକୁ ଶୁଣିବାକୁ ସହସ୍ର ସହସ୍ର ସଂଖ୍ୟାରେ ଲୋକ ରୁଣ୍ଡ ହୁଅନ୍ତି । ଯେଉଁ ଶୈଳୀରେ ଏ ଦେଶର ବିଶିଷ୍ଟତା ନାହିଁ, ତାକୁ ଏହି ଜନସାଧାରଣଙ୍କ ରୁଚି ପ୍ରତ୍ୟାଖ୍ୟାନ କଲା ଓ ବହୁ କାଳ ପର୍ଯ୍ୟନ୍ତ ଏହି ବିଶିଷ୍ଟ ଦୁନିଆଁ ବାହାରର ପ୍ରଭାବକୁ ଏଡ଼ି କବାଟ କଲା ରହିଲା । ୧୯୨୦ରେ ରବୀନ୍ଦ୍ରନାଥ ଯେତେବେଳେ ଓଡ଼ିଶାରେ ସୁପରିଚିତ ହେଲେ, ସେତେବେଳେ ଅବସ୍ଥା ଏହିପରି ଥିଲା ।

ଓଡ଼ିଶାର ପାଣ୍ଡୁଆରେ ରବୀନ୍ଦ୍ରନାଥଙ୍କର ଖଣ୍ଡିଏ ଜମିଦାରୀ ଥିଲା ଓ ସେ ତାଙ୍କ ଜମିଦାରୀ ଦେଖି ଆସିବା ବାଟରେ କେତେଗୁଡ଼ିଏ କବିତା ରଚିତ ହୋଇଥିଲା । ଲିଙ୍ଗରାଜ ଦେଉଳର ବିରାଟ ସୌନ୍ଦର୍ଯ୍ୟ ଦେଖି ସେ ଅତି କ୍ଷୁବ୍ଧ ହୋଇଥିଲେ ଓ ସେ ଆପଣାର ମନୋଭାବ ଲେଖିଯାଇଛନ୍ତି ।

ମୁଁ ଭାବୁଛି, ଏହି ପ୍ରସିଦ୍ଧ ଦେଉଳରେ ଯେଉଁ ମହାଭାବ ନିହିତ ଅଛି, ରବୀନ୍ଦ୍ରନାଥଙ୍କର ଅତି ଚମତ୍କାର ଗାମ୍ଭୀର୍ଯ୍ୟଗରିମାମୟ ସୃଷ୍ଟି 'ନୈବେଦ୍ୟ' କବିତା-ଗୁଡ଼ିକର ସର୍ଜନ ତାହାରି ଉଦ୍‌ବୋଧନର ହେତୁ । ସେ କବିତାର ଆରମ୍ଭରେ ଅଛି, ଭୁବନେଶ୍ୱରଙ୍କୁ ଜଣାଣ । ସେହି କବିତାରେ ଅନ୍ୟତ୍ର ତାଙ୍କୁ ସେ ମହେଶ ଓ ଅନନ୍ତ ବୋଲି ସମ୍ବୋଧନ କରିଛନ୍ତି । ଭଗବାନ ଶିବଙ୍କର ହିଁ ସେ ନାମଗୁଡ଼ିକ ଗୁଣଦ୍ୟୋତକ । ଏହି କବିତାରେ ଅଛି ଭୁବନେଶ୍ୱର ଦେଉଳର ଛବି ଦୃଶ୍ୟମାନ, ଦୀପାବଳୀ ଜଳୁଛି ଓ ଲିଭି ଯାଉଛି, ପୂଜକମାନେ ଘଣ୍ଟ ବଜାଉଛନ୍ତି; ଆଉ ଅଛି ଶ୍ରେଷ୍ଠ-ମନର ସଂକୀର୍ଣ୍ଣତା ଓ ଧର୍ମଧ୍ୱଜୀପଣ ସେହି ଯେଉଁମାନେ ଲୋଡ଼ନ୍ତି ସେହି ମହାନ୍

ନାବକୁ ଖଣ୍ଡ ଖଣ୍ଡ କରି ଦେବାକୁ; ଯେଉଁ ନାବ ଲକ୍ଷ ଲକ୍ଷ ଲୋକ ପାରି ହୋଇ-ଯିବାକୁ ଆଶ୍ରା !

ପୁରୀ ସମୁଦ୍ରକୂଳରେ ପାଥରପୁରୀ ବୋଲି ତାଙ୍କର ଗୋଟିଏ ଘର ଥିଲା; ସେ ବେଳେ ବେଳେ ରହୁଥିଲେ । ତାଙ୍କ କବିତାର ସ୍ୱପ୍ନରେ ନାନାରୂପରେ ବାରମ୍ବାର ସମୁଦ୍ର ପ୍ରକାଶ ପାଏ । କେତେବେଳେ ସେ ଘୋର ଗର୍ଜନମୟ ବିକଟ ଲହଡ଼ୀ ମାଳ ମାଳ କରାଳ ସମୁଦ୍ର, କେତେବେଳେ ସେ ଶାନ୍ତ ପାରାବାର, ଚିରନ୍ତନ ଆନନ୍ଦର ରୂପକ ।

ଏହିପରି କବି ରବୀନ୍ଦ୍ରନାଥଙ୍କର ଓଡ଼ିଶା ସହିତ ସଂପର୍କ ଥିଲା; କିନ୍ତୁ ବଙ୍ଗଳା କବିତା ପଢ଼ିନ୍ତି ଏପରି ବେଶି ଲୋକ ନାହାନ୍ତି ଓ ଜନସାଧାରଣଙ୍କର ଅଛୁ ଓଡ଼ିଶାର ପାରଂପରିକ କବିତାର ଅମୂଲ୍ୟ ସଂପଦ, ଯହିଁରେ ତାଙ୍କର ଚେତନା ହିଁ ଗଢ଼ାହୁଏ । ଯେଉଁ ଅଳ୍ପ କେତେ ଜଣ କବି ରବୀନ୍ଦ୍ରନାଥଙ୍କ ପ୍ରଭାବରେ ପଡ଼ିଲେ, ସେମାନେ ତାଙ୍କର ସେହି ଯେଉଁ ରୂପକଟି ଅଛି, ଯେ ଆତ୍ମା ପ୍ରଣୟିନୀ ରୂପରେ ଥାଇ ପ୍ରଣୟୀ ରୂପକ ଅସୀମ ପରମେଶ୍ୱରଙ୍କ ସହିତ ମିଳନ ପାଇଁ ଉତ୍କଣ୍ଠିତ ହେଉଛି ସେହି ରୂପକ ଚିତ୍ରରେ ମୁଗ୍ଧ ହେଲେ ଓ ତାଙ୍କର କବିତାର ଚିତ୍ର ଓ ଛନ୍ଦରେ ବାରମ୍ବାର ପ୍ରଭାବିତ ହେଉଥିଲେ ।

ଜାତୀୟବାଦୀ କବି ଓ ସଙ୍ଗୀତଜ୍ଞ ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ କବିତାରେ ରବୀନ୍ଦ୍ରନାଥଙ୍କ ପ୍ରଭାବ ମୂର୍ତ୍ତିମନ୍ତ ହେଲା । ୧୯୩୬ରେ ପ୍ରକାଶିତ, କିନ୍ତୁ ତାର ବହୁ ପୂର୍ବରୁ ରଚିତ ତାଙ୍କର 'ଜୀବନ-ସଙ୍ଗୀତ'ର କବିତାମାନଙ୍କରେ ରବୀନ୍ଦ୍ରନାଥଙ୍କର ପ୍ରଣୟିନୀ ପ୍ରଣୟୀ ପାଇଁ ପ୍ରତୀକ୍ଷାରେ ରହିଥିବା କବିଭାବର ପ୍ରତିବିମ୍ବ ପଡ଼ିଛି । ସେଥିରେ କବିଙ୍କର କାବ୍ୟସ୍ୱରୂପ ଗୋଟିଏ ନାରୀମୂର୍ତ୍ତି ହୋଇ ତାର ହୃଦୟର କବାଟ ଖୋଲି ରଖିଛି କାଳେ ସେ କେତେବେଳେ ଆସିବେ ବୋଲି; ସେ ତାଙ୍କର ଧୀର ପଦଶବ୍ଦ ଶୁଣୁଛି ଓ ଉତ୍ତେଜନାରେ ଥରି ଉଠିଛି । "ଗୀତାଳି" (୫୭)ରେ ରବୀନ୍ଦ୍ରନାଥ ବି ଏପରି ଗାଇଥିଲେ :

"ତୋମାର୍ ଦୁଆର୍ ଖୋଲାର୍ ଧ୍ୱନି
ଏଇଗୋ ବାଜେ ହୃଦୟ ମାଝେ ।"

ଲକ୍ଷ୍ମୀକାନ୍ତଙ୍କ କବିତାରେ ସେହି ଅଜଣା ପ୍ରଣୟୀର ସଙ୍ଗୀତ ପ୍ରଣୟିନୀର ବୀଣାରୁ ବାହାରୁଛି । ରବୀନ୍ଦ୍ରନାଥ ଗାଇଥିଲେ —

ବାଜାଓ ଆମାରେ ବାଜାଓ
ବାଜାଲେ ଯେ ସୁରେ
ପ୍ରଭାତ ଆଲୋରେ
ସେଇ ସୁରେ ମୋରେ ବାଜାଓ ।

ଲକ୍ଷ୍ମୀକାନ୍ତଙ୍କ କବିତାରେ ବେଳେବେଳେ ପ୍ରଣୟିନୀ ଶୁଣୁଛି ନଈ ଆରପାରିରୁ

କଏ ତାଙ୍କୁ ଡାକ ପକାଉଛ । "ଆନନ୍ଦ ଘନ", "ନିଖିଳ ବିଶ୍ୱ ନନ୍ଦିତ କରି ଜାଗିଛ ନିଖିଳ ଛନ୍ଦ, ଗଗନ-ଭୁବନ ସ୍ପନ୍ଦିତ କରି ବହୁଛ ମଳୟ ସ୍ପନ୍ଦ" ଏପରି ଭାଷା ବି ତାଙ୍କରେ ଅଛି ।

ଲକ୍ଷ୍ମୀକାନ୍ତ ମହାପାତ୍ର ଆପଣା କୃତିବଳରେ ନିଜେ ଅତି ପ୍ରସିଦ୍ଧ କବି । ସେ ଯେତେବେଳେ ରବୀନ୍ଦ୍ରନାଥଙ୍କଠାରୁ ଭାବ ଗ୍ରହଣ କରୁଥିଲେ, ସେତେବେଳେ ତାଙ୍କୁ ଆପଣାର କବିପ୍ରତିଭା ବଳରେ ପଦଛନ୍ଦରେ ଭୂଷିତ କରୁଥିଲେ । ତାଙ୍କ ସଙ୍ଗୀତାବଳି, ଭାରତର ସ୍ୱାଧୀନତା ପାଇଁ ରଚିତ ହୋଇଥିବା ତାଙ୍କର ନାନା ପଦ୍ୟ ଓ ଅନ୍ୟାନ୍ୟ କବିତାରେ ତାଙ୍କର ଶ୍ଳେଷ ଓ ବ୍ୟଙ୍ଗ ଓଡ଼ିଆ ସାହିତ୍ୟର ଅତି ଆଦରର ଅମୂଲ୍ୟ ସଂପଦ ହୋଇ ଯୁଗ ଯୁଗକୁ ରହିଥିବ । ତାଙ୍କର ଗଭୀର ଧ୍ୟାନ ଓ ସୂକ୍ଷ୍ମ କଳାଗ୍ରାହୀ ଭଙ୍ଗୀ ଥିଲା । ତେଣୁ ସେ ରବୀନ୍ଦ୍ରନାଥଙ୍କର ଆଧ୍ୟାତ୍ମ୍ୟ କବିତାମାନଙ୍କର ଆତ୍ମାକୁ ଗ୍ରହଣ କରିପାରିଲେ; କିନ୍ତୁ ଯେଉଁମାନେ ରବୀନ୍ଦ୍ରନାଥଙ୍କର ନାଁ ପଢ଼ୁଥିବା ଅନୁସରଣିଆ, ସେମାନେ ତା କରିପାରିଲେ ନାହିଁ ।

୧୯୨୦-୩୦ର ଆଦ୍ୟଭାଗରେ କେତେ ଜଣ କଲେଜ ଛାତ୍ର ରବୀନ୍ଦ୍ରନାଥଙ୍କ ପଦାଙ୍କ ଅନୁସରଣ କରି କବିତା ଲେଖିବା ଉଦ୍ୟମଟିଏ ଆରମ୍ଭ କଲେ । ଅନ୍ନଦା-ଶଙ୍କର ରାୟ ଯେ ପରେ ବଙ୍ଗଳା ଭାଷାରେ ଜଣେ ପ୍ରସିଦ୍ଧ ଔପନ୍ୟାସିକ ହେଲେ, ବୈକୁଣ୍ଠନାଥ ପଟ୍ଟନାୟକ ଓ କାଳନ୍ଦୀଚରଣ ପାଣିଗ୍ରାହୀ ଯେଉଁମାନେ ପଛେ କବି ହୋଇ ବିକାଶ ଲାଭ କଲେ, ହରିହର ମହାପାତ୍ର ଓ ଶରତଚନ୍ଦ୍ର ମୁଖାର୍ଜି ଏହି ଦଳର ଅଗ୍ରଣୀ ହୋଇଥିଲେ । ସେମାନେ ଆପଣା ଦଳର ନାଁ ଦେଇଥିଲେ "ନିର୍ବୋଧ ସମିତି" । 'ସବୁଜକବିତା' ଏହି ନାମରେ ସେମାନଙ୍କ କବିତା ସଂଗ୍ରହ ୧୯୩୧ରେ ପ୍ରକାଶିତ ହୋଇଥିଲା । ତାହା ପୂର୍ବରୁ ସାହିତ୍ୟିକ ମାସିକ ପତ୍ରିକା 'ଉତ୍କଳ-ସାହିତ୍ୟ'ରେ ସେମାନଙ୍କ ଲେଖା ବାହାରୁଥିଲା । 'ସବୁଜ' ଏ ଶବ୍ଦଟି ଓଡ଼ିଆ ନୁହେଁ ବଙ୍ଗଳା । ଏ ଶବ୍ଦର ଅର୍ଥ 'ହରିତ୍' । ଓଡ଼ିଆରେ ତାକୁ କହନ୍ତି 'ଶାଗୁଆ' । 'ସବୁଜପତ୍ର' ବୋଲି ବଙ୍ଗଳାରେ ଗୋଟିଏ ପତ୍ରିକା ବାହାରୁଥିଲା । ରବୀନ୍ଦ୍ରନାଥ ସେ ପତ୍ରିକାକୁ ଲେଖାମାନ ପଠାଉଥିଲେ । ତାଛଡ଼ା 'ବଲାକା'ରେ ଅଛି ତାଙ୍କର ସେହି ପ୍ରସିଦ୍ଧ କବିତା ; —

"ଓରେ ନବୀନ୍ ଓରେ ଆମାର କାଁଚା
ଓରେ ସବୁଜ ଓରେ ଅବୁଝ ......" ଇତ୍ୟାଦି

ପ୍ରଳୟ ପ୍ରେରଣା କବିତାରେ ଅନ୍ନଦାଶଙ୍କର ରାୟ ଲେଖିଛନ୍ତି;—

"ଅଗ୍ନି କଣା ଅଗ୍ନି କଣା ଦେହ ଦାପେ ଜାଳ ଦୀପ୍ତ ଶିଖା
ତାବ୍ର ତେଜେ ଦହିବ ମୁଁ ଜଡ଼ତାର ଅନ୍ଧ କୁଜ୍ଝଟିକା ।
ଶକ୍ତି ମଦେ କ୍ଷିପ୍ତ କରି ଶକ୍ତି ପାଇଁ ସର୍ବାଙ୍ଗ ଅଧୀର ..." ଇତ୍ୟାଦି

ରବୀନ୍ଦ୍ରନାଥଙ୍କ 'ଗୀତାଲି'ର ୧୮ଶ କବିତା ସହିତ ଏହାକୁ ତୁଳନା କରାଯାଇପାରେ —

"ଆଗୁନେର ପରଶ୍‌ମନି ଛୋଁଆଓ ପ୍ରାଣେ
ଏ ଜୀବନ ପୁଣ୍ୟ କରୋ ଦହନ ଦାନେ
ଆମାର ଏଇ ଦେହ ଖାନି ତୁଲେ ଧରୋ
ତୋମାର ଏଇ ଦେବାଲୟେର୍ ପ୍ରଦୀପ୍ କାରୋ ।"

ସେହି କବିତାରେ ଅଛି —

"ଝଟିକା ମୁଁ - ବହିଯିବି
ଦେଶ ପରେ ଯୁଗର ଉପରେ
ଅନଳ ମୁଁ —ଦହିଯିବି
ନିର୍ଜୀବେ, ସ୍ତବ୍‌ଧରେ ଅକାତରେ ।"

ଅନ୍ନଦାଶଙ୍କରଙ୍କର କବିତାଗୁଡ଼ିକ କେବଳ ପ୍ରତିଶ୍ରୁତି ହୋଇ ରହିଗଲା । ସେ ପ୍ରତିଶ୍ରୁତି ପୂରଣ ହେଲା ନାହିଁ; କାରଣ ସେ ଓଡ଼ିଆ-ସାହିତ୍ୟରୁ ବିଦାୟ ନେଇ ଚାଲିଗଲେ ।

ଶରତ୍ ମୁଖାର୍ଜି ଓ ହରିହର ମହାପାତ୍ର 'ସବୁଜକବିତା' ସଙ୍କଳନକୁ ଛାଡ଼ି ଅନ୍ୟତ୍ର କ୍ୱଚିତ୍ କବିତା ଲେଖିଥିଲେ ।

କାଳନ୍ଦୀଚରଣ ବେଶି ଦିନ କବି ହୋଇ ରହି ନ ଥିଲେ । ସେ ଅଳ୍ପ କେତୋଟି କବିତା ଲେଖିସାରି ତା'ପରେ ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ଲେଖିବାକୁ ମନଦେଲେ । କବି ହିସାବରେ ସେ ସତ୍ୟ ଓ ସୌନ୍ଦର୍ଯ୍ୟର ଅନୁସନ୍ଧାନୀ ଓ ତାଙ୍କର କବିତାମାନଙ୍କରେ ଏକପ୍ରକାର ସୂକ୍ଷ୍ମ ମନୋହାରିତା ଓ ତୀକ୍ଷ୍ଣ ବୌଦ୍ଧିକତା ଦେଖିବାକୁ ମିଳେ; କିନ୍ତୁ ସେ 'ମାଟିର ମଣିଷ' ଉପନ୍ୟାସର ଲେଖକ ହିସାବରେ ପ୍ରସିଦ୍ଧ ହେଲେ ଓ କବିତା ଲେଖିବା ଛାଡ଼ିଦେଲେ କହିଲେ ଚଳେ । ତାଙ୍କର ପୁଷ୍ପ-ମନ୍ଦିର କବିତାରେ ସେ ଲେଖିଛନ୍ତି—"ସକଳ ମମତା ତେଜି ନ ଖୋଜଇଁ ମୁକତି ମାରଗ" । ଏ ରବୀନ୍ଦ୍ରନାଥଙ୍କର ସେହି ପ୍ରସିଦ୍ଧ କବିତା ଧାଡ଼ିକର ହିଁ ପ୍ରତିଧ୍ୱନି, ଯେଉଁଠି ସେ କହିଛନ୍ତି "ବୈରାଗ୍ୟ ସାଧନେ ମୁକ୍ତି, ସେ ନହେଁ ଆମାର" । କାଳନ୍ଦୀଚରଣ ତାଙ୍କର 'ଲୋହିତ ବ୍ୟଥା' କବିତାରେ ଲେଖିଛନ୍ତି —

"ଫାଟି ପଡ଼ିଥିଲା ଗୋଲାପୀ ଅନ୍ତର କାର
ସେ ବ୍ୟଥା ପରଶେ ତ୍ରିଭୁବନ ଛାରଖାର
ଲୋହିତ ସେ ବ୍ୟଥା ଭାସଇ ଗଗନେ
ଅରୁଣ ରାଗିଣୀ ଗଗନେ ଗଗନେ
ସେ ବ୍ୟଥା ଏ ପ୍ରାଣେ ଉଠାଇଛି ହାହାକାର
ସକଳ ଅଙ୍ଗେ ମୋ ରକତ ଚୁମ୍ବି ତାର ।"

ଏ କବିତାରେ ରବୀନ୍ଦ୍ରନାଥଙ୍କ 'ଉର୍ବଶୀ' କବିତାର ଅଷ୍ଟମ ପଦର ପ୍ରଭାବ ପରିଷ୍କାର ବାରି ହୋଇ ପଡ଼େ । ରବୀନ୍ଦ୍ରନାଥଙ୍କ କବିତାରେ ଯେଉଁ ଗଭୀର

ଆଧ୍ୟାତ୍ମିକତାର ସ୍ୱର ସବୁବେଳେ ଲାଗି ରହିଥାଏ, ସବୁଜଦଳର ଏହିସବୁ କବିତାରେ ତାହା ଦେଖିବାକୁ ମିଳେ ନାହିଁ । ରବୀନ୍ଦ୍ରନାଥଙ୍କଠି ତାହା କବିଂକର ଅନ୍ତର୍ନିହିତ ପ୍ରକୃତ ବ୍ୟକ୍ତିତ୍ୱରୁ ବାହାରୁଥିଲା; ଏମାନଙ୍କଠି ତାହା କେବଳ ଗୋଟାଏ କ୍ଷଣସ୍ଥାୟୀ ମାନସିକ ଅବସ୍ଥା, ତାହା ମଧ୍ୟ ଅନେକ ସମୟରେ ନ ଥାଏ ।

ବୈକୁଣ୍ଠନାଥ ପଟ୍ଟନାୟକହିଁ ସବୁଜଦଳର ଏକମାତ୍ର କବି, ଯେ ଧାରାବାହିକ ଭାବେ କବି ହୋଇ ରହିଯାଇଛନ୍ତି । ରବୀନ୍ଦ୍ରନାଥଙ୍କ ପରି ସେ ମଧ୍ୟ ଗାଇଛନ୍ତି—

"ନିତ ନିତ ବସି ତୁମରି ବିରହ
ଅଶ୍ରୁରେ ଗୁନ୍ଥେ ହାର
ଏତିକି ମୋହର ଜୀବନର ତୁଲେ
ଅନ୍ତିମ ଉପହାର ।"

× × × ×

"ପୋଛି ଲୁହଧାର କେବେ ବୀଣାରାଗ ଦିଏ ମୁଁ ତୋଳି
ତୁମେ ସେ ସ୍ୱରଟି କରି ନେବ ଅବା ଶୁଣିବ ବୋଲି ।"

ସେ ଭଗବାନଙ୍କୁ ଆପଣାର ପ୍ରେମିକା ବୋଲି ସମ୍ବୋଧନ କରି ଗାଇଚନ୍ତି—

"ତୁମେ ମାୟାବିନୀ, ତୁମେ ତ ସତ୍ୟ, ତୁମେ ତ ତୃଷ୍ଣା
ଏ ଭୁବନେ କବି କରଇ ଗର୍ବ ତୁମେ ତା ଜାୟା ।"

ତାଙ୍କର ପ୍ରସିଦ୍ଧ କବିତା 'ଶେଷଗୀତ'ରେ ସେ ଗାଇଛନ୍ତି—

"ଜୀବନ ପାତ୍ର ମୋ ଭରିଛ କେତେ ମୋତେ
ନ ଦେଲି ବୋଲି କିଛୁ କହିବ କିହେ ଆଉ
ଜୀବନ ପ୍ରିୟତମ ହରିଛ ମୋ ଭରମ
ତରଣୀ ମୋର ଭବ ସାଗରେ ବହିଯାଉ ।"

ବେଳେ ବେଳେ ତାଙ୍କର ଶବ୍ଦସଙ୍ଗୀତରେ ରବୀନ୍ଦ୍ରନାଥଙ୍କ ପ୍ରଭାବ ବାରି ହୋଇପଡ଼େ । ଯେପରି—

"ଶୂନ୍ୟ ମୋର ଘର ଆଜିରେ ଖରତର
ତମିର ହାଣେ ଚିର ସଜନ
କି କଥା ନୀରବତା କହି ଜଳାଏ ବ୍ୟଥା
ନ ହଣେ ଦୂର ପ୍ରିୟ ସଜନ ।"

ଜଣକୁ ଆଦର୍ଶ ବୋଲି ଗ୍ରହଣ କରିନେଲେ ତାଙ୍କ ପ୍ରତି ପ୍ରଗାଢ଼ ଅନୁରକ୍ତି ଯୋଗୁଁ ତାଙ୍କର ପଦାଙ୍କ ଅନୁସରଣ କରିବାରେ ଲାଗିବା କୈଶୋରର ସାଧାରଣ ପ୍ରବୃତ୍ତି । ବୈକୁଣ୍ଠନାଥ କ୍ରମେ ଏ ଅବସ୍ଥାକୁ ଅତିକ୍ରମ କରିଗଲେ । ତାଙ୍କର ଆଦ୍ୟ-

ଜୀବନରେ ସେ ଯେଉଁ କବିତା ଲେଖୁଥିଲେ, ସେଥିରେ ସ୍ଥାନେ ସ୍ଥାନେ କେବଳ ଯେ ରବୀନ୍ଦ୍ରନାଥଙ୍କର ଭାବଧାରା ଦେଖି ଯାଉଥିଲା ସେତିକି ନୁହେଁ, 'କ୍ରନ୍ଦସୀ' ପରି କେତେକ ଶବ୍ଦ ଓ ରବୀନ୍ଦ୍ରନାଥଙ୍କର କେତେଗୁଡ଼ିଏ ବିଶିଷ୍ଟ ବାକ୍ୟାଂଶ ମଧ୍ୟ ବୈକୁଣ୍ଠନାଥଙ୍କର ସେତେବେଳର କବିତାମାନଙ୍କରେ ଏଠିସେଠି ଦେଖିବାକୁ ମିଳୁଥିଲା । କିନ୍ତୁ କ୍ରମେ ତାଙ୍କ କବିତାରେ ଅଧିକରୁ ଅଧିକ ହୋଇ ମୌଳିକତା ଫୁଟି ଉଠିଲା, ସାମାଜିକ ଚେତନାର ବିକାଶ ହେଲା, ଅନ୍ୟାୟ ଅବିଚାର ଅତ୍ୟାଚାର ଓ ସମାଜର ଅନ୍ୟାନ୍ୟ କଳଙ୍କ ବିରୁଦ୍ଧରେ ସେ ତାଙ୍କ କବିତାରେ ବିଦ୍ରୋହ କରି ଉଠିଲେ ଓ ସାଧାରଣ ମଲିମୁଣ୍ଡିଆ ଓ ତାର ଜୀବନର ସମସ୍ୟାମାନଙ୍କ ପ୍ରତି ସେ ଅଧିକ ଦୃଷ୍ଟି ଦେବାକୁ ଲାଗିଲେ ।

ସବୁଜଦଳର ବାହାରେ ଥାଇ ଆଉ ଜଣେ ପ୍ରସିଦ୍ଧ କବି ରବୀନ୍ଦ୍ରନାଥଙ୍କ କବିତାଦ୍ୱାରା ପ୍ରଭାବିତ ହେଲେ । ସେ ସ୍ୱର୍ଗୀୟା ନାରୀକବି କୁନ୍ତଳାକୁମାରୀ ସାବତ । ୧୯୨୭ ଓ ତାହାର ଆଖପାଖ ସମୟରେ ସେ କବିତା ଲେଖୁଥିଲେ ଓ ତାଙ୍କର ରଘୁ-ଅରକ୍ଷିତ, ଅଞ୍ଜଳି, ଅର୍ଚ୍ଚନା ଓ ସ୍ଫୁଲିଂଗ ଅତି ଜନପ୍ରିୟ ହୋଇଥିଲା । ସେ ବହୁତ ଉପନ୍ୟାସ ଲେଖିଥିଲେ । ସେତେବେଳେ ଓଡ଼ିଶାର ଗାଁଗହଳିରେ ସ୍ତ୍ରୀଲୋକମାନେ ଯେପରି ଦୁରବସ୍ଥାରେ ଚଳୁଥିଲେ, ସେହି ଅବସ୍ଥାକୁ ତାଙ୍କ ଉପନ୍ୟାସ-ମାନଙ୍କରେ ରୂପ ଦେଉଥିଲେ ଓ ସାମାଜିକ ଅବସ୍ଥାର ସଂସ୍କାର ହେଉ ବୋଲି ଆନ୍ଦୋଳନ କରୁଥିଲେ । ତାଙ୍କ କବିତାରେ ସେ ଭାରତୀୟ ଜାତୀୟତାର ବାଣୀ ଶୁଣାଇ ଦେଶକୁ ଉଦ୍‌ବୁଦ୍ଧ କଲେ । ସେ କେତେକ ପରିମାଣରେ ରବୀନ୍ଦ୍ରନାଥଙ୍କର ଛନ୍ଦ ଓ ଗଠନଶୈଳୀକୁ ଅବଲମ୍ବନ କରିଥିଲେ ଓ ତାଙ୍କର ଭକ୍ତିମୂଳକ କବିତାମାନଙ୍କରେ ସମୟ ସମୟରେ ରବୀନ୍ଦ୍ରନାଥଙ୍କର ବିଶିଷ୍ଟ ଭଂଗୀମାନ ପ୍ରତିବିମ୍ବିତ ହେଉଥିଲା । ତାଙ୍କ କବିତା 'ନମାଖୀ'ରେ ସେ ଅସୀମ-ପ୍ରଣୟୀଙ୍କ ଉଦ୍ଦେଶ୍ୟରେ ଗାଇଛନ୍ତି—

"ଅଶ୍ରୁରେ ଆଜି ଧୋଇଅଛୁ ମୋର ମରମର ଅହଂକାର
ପ୍ରାର୍ଥନା ମୋର ପୟରେ ନିବାର ନିରାଶାର ହାହାକାର ।"

ଏହିସବୁ ଧାଡ଼ିରେ ରବୀନ୍ଦ୍ରନାଥଙ୍କର ପ୍ରତିଧ୍ୱନି ଶୁଭେ । 'ମୋ କରଣୀ' ପଦ୍ୟରେ ସେ ଗାଇଛନ୍ତି—

"ଏ ଭବ କଷଣୁ ତାରଣ ହେ ନାଥ
ନୁହେଁ ସେ ଚରଣ ମାଗୁଣି ।"

ଏ ଧାରଣା ରବୀନ୍ଦ୍ରନାଥଙ୍କର । ତାଙ୍କର "ବିପଦେ ମୋରେ ରକ୍ଷା କୋରୋ ଏ ନହେଁ ମୋର ପ୍ରାର୍ଥନା" ସହିତ ଏହାକୁ ତୁଳନା କରାଯାଇ ପାରେ; କିନ୍ତୁ ଏ ପଦ୍ୟରେ ସେ ରବୀନ୍ଦ୍ରନାଥଙ୍କ ପରି ଭଗବାନଙ୍କୁ ଏଭଳି ମାଗୁଣି କରିନାହାନ୍ତି ଯେ ତାଙ୍କୁ ଧୈର୍ଯ୍ୟ ମିଳୁ, ତାଙ୍କର ପ୍ରାର୍ଥନା "କର୍ମହିଁ ମୋର ଧର୍ମ ହେଉ" । ଏ ପ୍ରାର୍ଥନାରେ ଗାନ୍ଧିଜୀଙ୍କର ପ୍ରଭାବ ସୁସ୍ପଷ୍ଟ । ତାଙ୍କ କବିତା 'ନରନାରାୟଣ'ରେ ସେ ତାଙ୍କର

ଅନନ୍ତରୂପୀ ପ୍ରଣୟୀଙ୍କୁ ଜଣାଇଛନ୍ତି, "ତୁମେ ମୋ ଘରବାଟେ ଯିବ ବୋଲି ଜାଣି ମୁଁ ଘରର କବାଟ ଖୋଲି ରଖିଥିଲି ଓ ରାତଯାକ ଉଜାଗର ହୋଇ ରହିଥିଲି । ତୁମ ଲାଗି ସମଗ୍ର ବିଶ୍ୱ ଚେଇଁଉଠିଲା, ସୁଗନ୍ଧ ବାୟୁ ବହିଲା, ଚଢ଼େଇମାନେ ତୁମର ବନ୍ଦନା ଗାଇଲେ; କିନ୍ତୁ ତୁମେ କେଉଁ ବାଟେ ଚାଲିଗଲ କେହି ଜାଣିପାରିଲେ ନାହିଁ । ଜଣେ ଦରିଦ୍ର ବ୍ୟକ୍ତିର ଛଦ୍ମବେଶ ଧରି ତୁମେ ତୁମ ଥାଳ ଭର୍ତ୍ତି କରି ଚାଲିଗଲ ।" ଏ ଭାବଟି ମଧ୍ୟ ରବୀନ୍ଦ୍ରନାଥଙ୍କ କବିତାରୁ ଅବିକଳ ଗ୍ରହଣ କରାହୋଇଛି ।

କିନ୍ତୁ କବି କୁନ୍ତଳାକୁମାରୀଙ୍କ କବିତାଗୁଡ଼ିକ ଓଡ଼ିଆମାନଙ୍କୁ ଉଦ୍‌ବୁଦ୍ଧ କରିବା ଓ ସେମାନଙ୍କର କପରି ଅଧୋଗତି ଘଟିଛି, ତାଙ୍କ ମନରେ ସେଥିପ୍ରତି ଚେତନା ଉଦ୍ରେକ କରିବା କାର୍ଯ୍ୟରେ ମୁଖ୍ୟତଃ ନିୟୋଜିତ ହୋଇଥିଲା । ତାଙ୍କ କବିତାରେ ସଙ୍ଗୀତ ଅନ୍ତର୍ନିହିତ ଥିଲା ଓ ସେ କବିତାରେ ନାନା ଐଶ୍ୱର୍ଯ୍ୟ ଥିଲା । କିନ୍ତୁ ସେ ଅଳ୍ପଦିନେ ମରିଗଲେ ।

ଅଳ୍ପକ୍ଷଣସ୍ଥାୟୀ ସବୁଜଦଳର ଅବସାନ ସଙ୍ଗେ ସଙ୍ଗେ ଓଡ଼ିଆ-ସାହିତ୍ୟ ଉପରେ ରବୀନ୍ଦ୍ରନାଥଙ୍କର ପ୍ରତ୍ୟକ୍ଷ ପ୍ରଭାବର ଅବସାନ ଘଟିଥିଲା । ତାପରେ କେତେ କେଉଁଠି ତାର କ୍ଷୀଣ ସ୍ୱର ଶୁଭେ । କବି ମାନସିଂ ପ୍ରେମର ଗୀତହିଁ ଅଧିକ ଗାଆନ୍ତି । ତାଙ୍କ କବିତାର ବିକାଶ ତା'ର ଆପଣା ମାର୍ଗରେ ଘଟିଥିଲା । କେତେକ ସ୍ଥାନରେ ତାଙ୍କ କବିତାରେ ରବୀନ୍ଦ୍ରନାଥଙ୍କ ସ୍ୱରର କ୍ଷୀଣ ପ୍ରତିଧ୍ୱନି ଶୁଣାଯାଏ । ରବୀନ୍ଦ୍ରନାଥଙ୍କ ଗୀତିନାଟ୍ୟ ଗ୍ରନ୍ଥରେ ମାନସିଂ 'ସାଧବଝିଅ' ପ୍ରଭୃତି କେତେକ ଗୀତିନାଟ୍ୟ ବି ଲେଖିଥିଲେ । ତାଙ୍କର 'ହେମପୁଷ୍ପ' କବିତା ସଂକଳନରେ 'ଶୁଭଦୃଷ୍ଟି' ବୋଲି ଯେଉଁ ପଦ୍ୟଟି ଅଛି, ସେଥିରେ ଅର୍ଜୁନଙ୍କ ସଙ୍ଗେ ରାଜକୁମାରୀ ଉଲୁପୀଙ୍କର ହଠାତ୍ ସାକ୍ଷାତ୍, ପ୍ରେମ, ମିଳନ ଓ ବିଚ୍ଛେଦ ବର୍ଣ୍ଣିତ ହୋଇଅଛି । ଉଲୁପୀ ପମ୍ପା ସରୋବରରେ ସଖୀମାନଙ୍କ ସହିତ ସ୍ନାନନିରତା ଥିଲାବେଳେ ତାଙ୍କ ଜୀବନର ପ୍ରଥମ ଥରକ ଅର୍ଜୁନଙ୍କୁ ଦେଖିଥିଲେ । କବି ମାନସିଂ ବର୍ଣ୍ଣନା କରିଛନ୍ତି ଯେ ଜଳକ୍ରୀଡ଼ାରତା ଯୁବତୀମାନେ ଯେତେବେଳେ ପମ୍ପା ସରୋବରର ଜଳ ଉପରେ ମୃଦୁଳ ଆଘାତ କରୁଥାନ୍ତି, ସେତେବେଳେ ସେମାନଙ୍କ ହାସ୍ୟରୋଳ ସହିତ ଜଳର ମଧୁର କଲ୍ଲୋଳ ଉଠୁଥାଏ । ଯୁବତୀମାନଙ୍କ ବାହୁକୁ ସେ ମୃଣାଳ ସହିତ ଉପମା ଦେଇଛନ୍ତି । ଏହି ଛବିଟିକୁ ରବୀନ୍ଦ୍ରନାଥଙ୍କର ଗୋଟିଏ 'ସାମାନ୍ୟ କ୍ଷତି' କବିତାରେ ଥିବା ଏହିପରି ଗୋଟିଏ ଛବି ସହିତ ତୁଳନା କରାଯାଇପାରେ । ମାନସିଂ ଲେଖିଛନ୍ତି—

"ସହସା ଉଠିଲା ନୀରେ କୋମଳ କଲ୍ଲୋଳ
ଷୋଡ଼ଶୀ ମୃଣାଳ ବାହୁ ମୃଦୁଳ ଆଘାତେ
ନୀଳ ନୀର ଫାଟି ଉର୍ଦ୍ଧ୍ୱେ ଉଠଇ ମନୋଜ୍ଞେ ।"

ରବୀନ୍ଦ୍ରନାଥ ଲେଖିଥିଲେ—"କଲକଲ୍ଲୋଲ ଲାଜ ଦିଲ ଆଜ ନାରୀକଣ୍ଠେର କାକଲି
ମୃଣାଲ ଭୁଜେର ଲଲିତ ବିଲାସେ
ଚଞ୍ଚଲ ନଦୀ ମାତେ ଉଲ୍ଲାସେ" ଇତ୍ୟାଦି ।

ମାନସିଂ 'ବିଶ୍ୱରୂପ' ବୋଲି ଯେଉଁ ପଦ୍ୟଟି ଲେଖିଛନ୍ତି, ତାହା ରବୀନ୍ଦ୍ରନାଥଙ୍କର "ବୈରାଗ୍ୟସାଧନେ ମୁକ୍ତି ସେ ନହେ ଆମାର" ଧାଡ଼ିଟିର ସଂପ୍ରସାରଣ ବୋଲି ଜଣାପଡ଼େ । ରବୀନ୍ଦ୍ରନାଥଙ୍କ ପରି କବି ମାନସିଂଙ୍କ ବର୍ଣ୍ଣିତ ପ୍ରେମିକ ମଧ୍ୟ ଘୋଷଣା କରିଛି—"ମୁଁ ସବୁ ଗବ ଛାଡ଼ି ପାରିବି ସିନା କିନ୍ତୁ ତୁମ ଲାଗି ମୋର ଯେଉଁ ଗବ ତାକୁ କେବେ ଛାଡ଼ିପାରିବି ନାହିଁ ।" ମାନସିଂ ବହୁତ କବିତା ଲେଖିଛନ୍ତି; କିନ୍ତୁ ତାଙ୍କର ଅନ୍ୟାନ୍ୟ କବିତାରେ ରବୀନ୍ଦ୍ରନାଥଙ୍କ ପ୍ରଭାବମୁକ୍ତ ଦିଶେ ନାହିଁ ।

କବି ମାନସିଂଙ୍କର ଇଂରେଜୀ ସାହିତ୍ୟରେ ଗଭୀର ଅଧ୍ୟୟନ ଅଛି ଓ ସଂସ୍କୃତ ସାହିତ୍ୟ ସହିତ ମଧ୍ୟ ତାଙ୍କର ଘନିଷ୍ଠ ପରିଚୟ ଅଛି । ଏ ଉଭୟ ସାହିତ୍ୟର ପ୍ରଭାବ ରବୀନ୍ଦ୍ରନାଥଙ୍କ ଉପରେ ମଧ୍ୟ ପଡ଼ିଥିଲା । ଭାବାବେଗମୟ ଆନ୍ତରିକତା, ଚିତ୍ରରେ ବର୍ଣ୍ଣମିଶ୍ରଣରେ ବିଚକ୍ଷଣତା, ସ୍ପଷ୍ଟତା, ଇଙ୍ଗିତ, ଗମ୍ଭୀର ପ୍ରଶାନ୍ତ ଓ ଭଙ୍ଗୀରେ ଅବିଚଳତା ମାନସିଂହଙ୍କ କବିତାର ସ୍ୱାଭାବିକ ବିଶେଷତ୍ୱ । ସେ ତାଙ୍କର 'ଧ୍ରୁବତାରା' କବିତାରେ ଗଭୀର କାରୁଣ୍ୟ ରସ ଫୁଟାଇ ଗାଇଛନ୍ତି—

"ଧ୍ରୁବତାରା ଯଦି ନାହିଁ<br>
କେଉଁନେ ଭୁବନ-ସାଗରେ ତରଣୀ ବାହି<br>
କିନ୍ତୁ ଯେବେ ମୋର ନଉକା ଟେକିଲି ପାଲ<br>
କନକ ତପନୋଜ୍ଜ୍ୱଲ ଥିଲା ସେହି କାଳ<br>
ମେଲିଲି ତରଣୀ ସୁଖେ ସଙ୍ଗୀତ ଗାଇ<br>
ଧ୍ରୁବତାରା ଏବେ କାହିଁ ?"

ପୁଣି— "ଉପରେ ଜଳଦ ଗର୍ଜନ ଘନ ଘନ<br>
ଗମ୍ଭୀର ରୁଦ୍ର ଦୃପ୍ତ ପ୍ରଭଞ୍ଜନ<br>
ତ୍ରସ୍ତା ହେ କହ ଯାତ୍ରୀ ମୁଁ ଯାଏ କାହିଁ ?<br>
ଧ୍ରୁବତାରା ଦେଖା ନାହିଁ ।<br>
ବିଚିତ୍ର ଏ ଯେ ବାହିବା ତରଣୀ ସାଗରେ<br>
ମରଣ ଗ୍ରାସୁଛି ଜୀବନ ଆଗରେ ଆଗରେ<br>
ମରଣକୁ ଏଡ଼େ ଯାତ୍ରୀ ତାହାରେ ଗ୍ରହି<br>
ସେହି ତାରା ଆଜି କାହିଁ ?"

ତାଙ୍କ କବିମାନସର ଏହି ବିଶିଷ୍ଟ ଆତ୍ମମୁଖ୍ୟ ତାଙ୍କ କବିତା 'ନିଦ୍ରିତ ଭଗବାନ'ରେ ଆହୁରି ସ୍ପଷ୍ଟ ହୋଇଛି । ସେ ଲେଖିଛନ୍ତି —

"ଦେବ ଶିଶୁ ଚଳେ ନରକର ଅଭିସାରେ<br>
ଭଗବାନ ତୁମେ ନିଦ୍ରିତ କେଉଁଠାରେ ?

× × ×

ଗୃଲ ମୁଁ ଅସିଛୁ ବହୁଦୂର ପଥେ ପଥେ
ଦେଉଲ ତୁମର ଦର୍ଶନାହିଁ ଅଜ ମୋତେ
× × ×
ଆଲୋକବାସୀ ମୁଁ ଅନ୍ଧାରେ ଗଲି ମିଶି
ମୁକ୍ତ ମୁଁ ମତେ ଅବରୋଧ ଦଶ ଦିଶି ।”

ତାଙ୍କର ପରବର୍ତ୍ତୀ କବିତାମାନଙ୍କରେ ଯୋଡ଼ିଏ ଧାରାର ବିକାଶ ଘଟିଲା । ଗୋଟିଏ ହେଉଛି—ଜାଗତିକ ବାସ୍ତବତା ସହିତ ସମ୍ପର୍କ ରଖି ସାଧାରଣ ଜୀବନର ନାନା ଭାବ ଓ ଚିନ୍ତାକୁ ପଦ୍ୟରେ ପ୍ରକାଶ କରିବା । ତାର ଉଦାହରଣ ତାଙ୍କ କାବ୍ୟ 'କମଳାୟନ' । ଆରଧାରଟି ହେଉଛି—ଜାଗତିକ ସାଧାରଣ ବାସ୍ତବ ଜୀବନ ସହିତ ସମ୍ପର୍କ ନ'ଥିବା ଗମ୍ଭୀର ତତ୍ତ୍ୱପୂର୍ଣ୍ଣ ଭାବରାଜିକୁ କବିତାଦ୍ୱାରା ପ୍ରକାଶ କରିବା—ତାଙ୍କର ପରବର୍ତ୍ତୀ କାଳର କବିତା ଓ ତାଙ୍କର ସନେଟ ସଙ୍କଳନ ତାର ଉଦାହରଣ ।

ଆଧୁନିକ କବିମାନଙ୍କ ଭିତରେ କବି ରାଧାମୋହନ ଗଡ଼ନାୟକ ଜଣେ ଶକ୍ତିଶାଳୀ କବି । ତାଙ୍କ କବିତାରେ ରବୀନ୍ଦ୍ରନାଥଙ୍କ ଭାବଧାରା କି କବି-ଆତ୍ମମୁଖ୍ୟର ପ୍ରତିଛବି ଦେଖାଯାଏ ନାହିଁ । ତାଙ୍କର ପ୍ରେମ ଅତି ଆବେଗମୟ, ଅଧୀର ଓ ତାହା ପ୍ରଣୟିନୀ ପ୍ରତି ପ୍ରଣୟୀର ପ୍ରେମ ନୁହେଁ । ସେ ପ୍ରେମ ସମଗ୍ର ମାନବଜାତି ପ୍ରତି କବିଙ୍କର ପ୍ରେମ । ଦୁର୍ଦ୍ଦଶାଗ୍ରସ୍ତ ଯନ୍ତ୍ରଣାକ୍ଳିଷ୍ଟ ସାଧାରଣ ମନୁଷ୍ୟ ପ୍ରତି ଏ କବିଙ୍କର ଗଭୀର ସହାନୁଭୂତି ପ୍ରକାଶ ପାଏ ଓ ବେଳେ ବେଳେ ସେ ସହାନୁଭୂତି ଅତି ଉଗ୍ର ବିକ୍ଷୋଭରେ ପରିଣତ ହୋଇ ସତେ ଅବା ଆକାଶବ୍ୟାପୀ ହୋଇଯାଏ । ପୁରୁଷ ଓ ତାର ପ୍ରଣୟିନୀ ମଧ୍ୟରେ ଘଟୁଥିବା ଯେଉଁ ଦୈହିକ କାମଜ ପ୍ରେମ ପ୍ରତି ଗତାନୁଗତିକ ପନ୍ଥାରେ କବିମାନଙ୍କର ଯୁଗ ଯୁଗର ଆତ୍ମମୁଖ୍ୟ ରହିଆସିଛି, କବି ଗଡ଼ନାୟକ ଜାଣି ଶୁଣି ସେ ଆତ୍ମମୁଖ୍ୟକୁ ପ୍ରତ୍ୟାଖ୍ୟାନ କରିଛନ୍ତି ଓ ଉଦାର ମାନବିକତାମୟ ନୂତନ ପନ୍ଥାକୁ ଅବଲମ୍ବନ କରିଛନ୍ତି । ତାଙ୍କର ଏହି ବିଗ୍ରହଧାରା ଜଗନ୍ନାଥ ଦାସଙ୍କ ଭାଗବତରୁ ଗୃହୀତ ପିଙ୍ଗଳା ବେଶ୍ୟା ଉପାଖ୍ୟାନରେ ରୂପକ ଛଳରେ ବର୍ଣ୍ଣିତ ହୋଇଅଛି । ପିଙ୍ଗଳାର ମୋହ ଭାଙ୍ଗିଯାଇଛି । ସେ ଘୋଷଣା କରୁଛି ଯେ ପୁରୁଣା ଜୀବନର ଧାରା ସହିତ ସେ ସମ୍ପର୍କ ଛିନ୍ନ କରିଛି । ସେ ଗାଉଛି—

“ଏ ମୋର ଜୀବନ-ପଙ୍କ ଉରସେ ଫୁଟିଛି ଶତଦଳ
ଶକ୍ତି ଏ ମୋର ଶୁକ୍ତି ଗରଭେ ଫୁଟିଛି ମୁକ୍ତାଫଳ ।”

ଅଉ ମାନବ ପ୍ରତି ତାଙ୍କର ପ୍ରୋଜ୍ଜ୍ୱଳ ସହାନୁଭୂତି ଓ ତାଙ୍କର କାବ୍ୟାଦର୍ଶର ସ୍ୱରୂପ ତାଙ୍କର 'ମୌସୁମୀ' କବିତାରେ ସୁସ୍ପଷ୍ଟ ହୋଇଛି । ସେ କବିତାରେ ମୌସୁମୀବାୟୁ କହୁଛି ଯେ ସେ ଗାର୍ହସ୍ଥ୍ୟ ପ୍ରେମର ଅଳସ ଜୀବନରେ ଦିନ ବିତଉଥିଲା; କିନ୍ତୁ ଗ୍ରୀଷ୍ମର ପ୍ରଖର ରୌଦ୍ରରେ କ୍ଳିଷ୍ଟଆର୍ତ୍ତ ପୃଥିବୀର ଦୁଃଖରେ ସେ ଅଧୀର ହୋଇ ତାର ଦୁର୍ଦ୍ଦଶାମୋଚନ କରିବାକୁ ଧାଇଁ ଆସିଚ । ସେ ଗାଉଚ--

"ତପତ କାହାର ନିଶ୍ୱାସ
ବୁକ୍ର ବେଦନାର ଉଚ୍ଛ୍ୱାସ୍
ସହସା ବାଜିଲ ଅଙ୍ଗେ ମୋର ।"

ତାପରେ-- "ନମ୍ର ବୁହଇ କମ୍ର ନୂପୁର ନୂହଇ ଧୀର
ଉଗ୍ର ମୁଁ ଆଜି ବ୍ୟଗ୍ର ମୁଁ ଆଜି ଅଗ୍ରସର
ସାଗର ବକ୍ଷ ବନ୍ଧ ଆଣିଅଛି ସକଳ ଧାରା
ଦୂର ଗଗନୁ ଉଡ଼ାଇ ଆଣିଚି ବାରିଦମାଳା
ପୀଡ଼ିତ ପ୍ରାଣର ମଙ୍ଗଳ ଲାଗି ଜୀବନ ଦେଇ
ଦୁର୍ଦ୍ଦିନ ମୁହିଁ
ସୃଷ୍ଟିର ତଳେ
ଦୁର୍ଦ୍ଦିନ ମୁହିଁ ଆଣୁଚି ଏଇ ।"

ସୁଖ୍ୟାତ ଆଧୁନିକ କବି ଗୋଦାବରୀଶ ମହାପାତ୍ରଙ୍କ କବିତାରେ ଏହି ସ୍ୱର ଅତିଶୟ ଶକ୍ତିଶାଳୀ ହୋଇ ଫୁଟିଉଠିଛି । 'ବଢ଼ି' ବିଷୟରେ ସେ ଯେଉଁ କବିତା ଲେଖିଛନ୍ତି, ସେଥିରେ ବନ୍ୟାକ୍ଲିଷ୍ଟମାନଙ୍କ ପ୍ରତି ସହାନୁଭୂତିରେ ତାଙ୍କ ସ୍ୱର ଗଦଗଦ ହୋଇ ଥରଉଠିଛି । ଯେଉଁମାନେ ବଢ଼ି ଅଞ୍ଚଳର ଦୁର୍ଦ୍ଦଶା ଦେଖିବାକୁ ଯାଇ ହାତ ପାଦ ଓଦା ହେବ ବୋଲି କହି କାଦୁଅକୁ ଓହ୍ଲାଇ ନାହାନ୍ତି ସେମାନଙ୍କୁ ଏ କବିତାରେ ତୀବ୍ର ଭାବରେ ସମାଲୋଚନା କରାଯାଇଛି । ଅକୃତ୍ରିମ ସହାନୁଭୂତିରେ ଜର୍ଜରିତ ହୋଇ ତାଙ୍କର କବିତାଗୁଡ଼ିକ ଅତି ପ୍ରଭାବଶାଳୀ । ଓଡ଼ିଶାର ପୁରପଲ୍ଲୀରେ ଯେଉଁ ସାଧାରଣ ମଲମୁଣ୍ଡିଆ ଲୋକ ଅବହେଳିତ ଅବସ୍ଥାରେ ପଡ଼ିରହେ, ନୀରବରେ ସବୁ ଦୁର୍ଦ୍ଦଶା ସହି ସହି ମରିଯାଏ ଓ ଆପଣାର ଦୁଃଖଦୁର୍ଦ୍ଦଶା ଛଡ଼ା ଅନ୍ୟ ବାଟରେ ଜୀବନକୁ ଉପଭୋଗ କରିବାକୁ ସୁବିଧା ପାଏ ନାହିଁ, ତାହାର ଗୁହାରିଟେ ସେ ତାଙ୍କର କବିତାଗୁଡ଼ିକରୁ ଶୁଣନ୍ତି । ଖୋଳ ଉପାସରେ ମରିଯାଇଥିବା ପିଲାଟିଏ, ବାଟ କରରେ ପଡ଼ିଥିବା କୌଣସି ନରକଙ୍କାଳ ଆଉ ରୂପକ ଛଳରେ ଯୁଗ ଯୁଗ ଯାକେ ଲୋକେ ମାଡ଼ିଏ ମାଡ଼ିଏ ପିଇ ପିଇ ଦେଖୁଥିବା ପେଜ ମାଠିକ, କୋଠା, ଶାଗୁଣା, ମହାନଦୀକୂଳରେ ଯୁବରାଜ ହୋଇ ଅଭିଷେକ ହେଉଥିବା ଗୋଟାଏ ମାଙ୍କଡ଼, ତାତ୍କାଳିକ ସମସ୍ୟାମାନ ଏହିପରି ତାଙ୍କ କବିତାମାନଙ୍କର ବିଷୟବସ୍ତୁ । ତାଙ୍କର କେତେଗୁଡ଼ିଏ କବିତା "କଣ୍ଟା ଓ ଫୁଲ" ନାମକ ସଂକଳନରେ ପ୍ରକାଶିତ ହୋଇଛି । ଅନେକ ସମୟରେ ସେ ରାଜନୈତିକ ସମାଲୋଚନାମୂଳକ ବ୍ୟଙ୍ଗ-କବିତା ଆଦି ଲେଖନ୍ତି ଓ ସେ "ନିଆଁଖୁଣ୍ଟା" ମାସିକ ପତ୍ରିକାର ସଂପାଦକ । ଅନେକ ସମୟରେ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ଚିତ୍ର ତାଙ୍କ କବିତାମାନଙ୍କରେ ବର୍ଣ୍ଣିତ ହୋଇଥାଏ ଓ ତାଙ୍କ କବିତାର ଭାଷା ମଧ୍ୟ ଉତ୍କଳମଣିଙ୍କ କବିତାର ଭାଷା ପରି ସ୍ୱଚ୍ଛ ଓ ଶୁଦ୍ଧ ଜଣାପଡ଼େ ।

କେବଳ ଛନ୍ଦ ଛଡ଼ା ଅନ୍ୟ କେଉଁଥିରେ ତାଙ୍କଠି ରବୀନ୍ଦ୍ରନାଥଙ୍କ ପ୍ରଭାବ ପଡ଼ିଥିଲା ଭଳି ଜଣାପଡ଼େ ନାହିଁ ।

ଆଧୁନିକ ଯୁଗରେ ଓଡ଼ିଆ କବିତା ଚିରାଚରିତ ଭାବଗୀତଠାରୁ ଯେପରି ଦୂରେଇ ଦୂରେଇ ଗଲା, ସେହି ବିଭେଦର କ୍ରମ କବି ସଚ୍ଚି ରାଉତରାୟଙ୍କ କବିତାରେ ଅଙ୍କୁରି ବଢ଼ି ବଢ଼ି ଗ୍ରହିଲା । ଏ କବି ତାଙ୍କ କୈଶୋରରେ ରବୀନ୍ଦ୍ରନାଥଙ୍କ "ବର୍ଷାମଙ୍ଗଳ"କୁ ଓଡ଼ିଆରେ ଅନୁବାଦ କରିଥିଲେ । ରବୀନ୍ଦ୍ରନାଥଙ୍କ ସାହିତ୍ୟ ସହିତ ତାଙ୍କର ଘନିଷ୍ଠ ପରିଚୟ ଅଛି । ଓଡ଼ିଶା ଓ ବଙ୍ଗଳା ମଧ୍ୟରେ ସମ୍ବନ୍ଧ ପ୍ରତିଷ୍ଠା କରିବାକୁ ସେ ଯେଉଁ ଚେଷ୍ଟା ଚଳାଇଥିଲେ, ସେ ଚେଷ୍ଟା ସଫଳ ହେଉ ବୋଲି ଥରେ ସେ ରବୀନ୍ଦ୍ରନାଥଙ୍କଠାରୁ ଗୋଟିଏ ଆଶୀର୍ବାଦ ବାଣୀ ଆଣିଥିଲେ ।

କବି ସଚ୍ଚି ରାଉତରାୟଙ୍କ କବିତାରେ କ୍ରମ ବହିର୍ମୁଖୀ ଓ ଜଟିଳ । ନାନା ପ୍ରକାର କବି ଆଭିମୁଖ୍ୟ, ନୂତନତର ଶୈଳୀ ଗଢ଼ିବା ପାଇଁ ବିଦେଶର ଅନୁଶୀଳନ, ପରିବର୍ତ୍ତନ, ତାହା ସହିତ ତୀକ୍ଷ୍ଣ ବୁଦ୍ଧି ଓ ଶକ୍ତିଶାଳୀ ସର୍ଜନଶୀଳ ପ୍ରତିଭା ଏସବୁ ତାଙ୍କଠାରେ ଏକାଠି ମିଶିଛି । ତାଙ୍କ କବିତା ବିକାଶର ଗୋଟାଏ ଅବସ୍ଥାରେ ସେ ରବୀନ୍ଦ୍ରନାଥଙ୍କ ରଚନା ଭିତରୁ ବିଶିଷ୍ଟ ଶବ୍ଦସମାହାରମାନ ଉଠାଇ ନେଇ ବ୍ୟବହାର କରୁଥିଲେ । ଉଦାହରଣ ସ୍ୱରୂପ 'ସ୍ୱର୍ଗ ବକୁଳର କନ୍ଦନ' 'ଘର ଛଡ଼ା ଏଇ ପଥର କବିତା', 'ମାଟିର ମଳିନ ବୁକେ, 'ମୌନ ଦୀର୍ଘଶ୍ୱାସ' ଇତ୍ୟାଦି ଓ ରବୀନ୍ଦ୍ରନାଥଙ୍କ 'ହେ ମୋର ଦୁର୍ଭାଗା ଦେଶ'ର ଗ୍ରନ୍ଥରେ ସୃଷ୍ଟି କରାହୋଇଥିବା ସଚ୍ଚି ରାଉତରାୟଙ୍କ "ହେ ମୋର ଅପରାଧ ଦେଶ" ପରି ଧାଡ଼ିମାନ । ତାଙ୍କ କବିତା ବିକାଶର ଗୋଟିଏ ବିଶିଷ୍ଟ ଅବସ୍ଥାରେ ସେ ଏହିପରି ଭାବରେ କବିତା ରଚନା କରୁଥିଲେ; କିନ୍ତୁ ତାହା ପୂର୍ବରୁ ସେ ପଲ୍ଲୀଜୀବନର ସରଳତା, ପ୍ରେମ, ସୌନ୍ଦର୍ଯ୍ୟ, ଦୁର୍ଦ୍ଦଶା ଓ ଯାତନାର ଚିତ୍ରସମ୍ବଳିତ ମନୋହାରୀ କବିତାମାନ ରଚନା କରି ଖ୍ୟାତି ପାଇ ସାରିଥିଲେ । ପରବର୍ତ୍ତୀ ଅବସ୍ଥାରେ ଯେତେବେଳେ ସେ ରବୀନ୍ଦ୍ରନାଥଙ୍କ ଦ୍ୱାରା ପ୍ରଭାବାନ୍ୱିତ ହୋଇ କବିତା ଲେଖିବାକୁ ଲାଗିଲେ, ସେତେବେଳେ ସେ ଲେଖିଥିଲେ :—

"ଏହି ପ୍ରେମ, ଏହି ସୃଷ୍ଟି, ବହି ମୋର ଆତ୍ମାର ସ୍ୱାକ୍ଷର<br>
ପଡ଼ିରହେ ବହୁ ପଛେ ଛିନ୍ନ ଲିପି ଯଥା ଅକ୍ଷାତର<br>
ସମ୍ମୁଖେ ତ ହାତ ଠାରି ବାରେ ବାରେ କରଇ ଇଶାରା<br>
ଯିବାକୁଇ ହେବ ମୋତେ ବହୁ ଦୂରେ ମୋ ପଥର ଧାରା ।<br>
ଯାହା ମୋ ରହିଲା ପଛେ ତହିଁ ଲାଗି ନାହିଁ ତିଳେ କ୍ଷୋଭ<br>
ସକଳକୁ ପୂର୍ଣ୍ଣ କରି ଜାଗେ ମନେ ଯାହାର ଗୌରବ ।"

ରବୀନ୍ଦ୍ରନାଥଙ୍କ 'ଶେଷେର୍ କବିତା'ର ଶେଷ ପଦ୍ୟରେ ଓ ତାଙ୍କର 'ବଲାକା' ସଙ୍କଳନରେ ପୁରାତନ ବର୍ଷକୁ ବିଦାୟ ଜଣାଇଲାବେଳେ ଏହିପରି କବି-ଆଭିମୁଖ୍ୟ ପ୍ରକାଶ ପାଇଛି ।

ମାର୍କସ୍‌ବାଦର ପ୍ରଭାବରେ ପଡ଼ି କବି ସଚ୍ଚି ରାଉତରାୟ ବିପ୍ଳବ ବିଷୟରେ ଅନେକ ଉତ୍ତେଜକ କବିତା ରଚନା କରିଥିଲେ । ତାଙ୍କର ସେ ଅବସ୍ଥା ମଧ୍ୟ ଚାଲିଗଲା । ତାପରେ ସେ ଯେଉଁ କବିତାମାନ ଲେଖିଲେ, ସେଥିରେ ଅତ୍ୟାଚାରିତ ବ୍ୟକ୍ତିମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଏ କବିଙ୍କ ସ୍ୱାଭାବିକ କାବ୍ୟପ୍ରତିଭା ମଧ୍ୟ ପରିସ୍ଫୁଟ ହୋଇଥିଲା । ଏହା ପୂର୍ବରୁ ତାଙ୍କର ଏ ସ୍ୱାଭାବିକ କାବ୍ୟ-ପ୍ରତିଭା ତାଙ୍କ 'ବାଜି ରାଉତ' କବିତାରେ ପ୍ରକାଶ ପାଇଥିଲା ଓ ଗାଁ ଗଡ଼ି ସ୍ତ୍ରୀ ସନ୍ତାନ ଘେନି ଆସାମର କୁଲି ବଗିଚାରେ କାମ କରି ବଞ୍ଚିବ ବୋଲି ଚାଲିଯାଉଥିବା କୃଷକ ବିଷୟରେ ରଚିତ ହୋଇଥିବା କବିତାରେ ବିକଶିତ ହୋଇଥିଲା ।

ପରବର୍ତ୍ତୀ ଅବସ୍ଥାରେ ସେ ଯେତେବେଳେ ଆପଣାର କବି-ବ୍ୟକ୍ତିତ୍ୱର ସ୍ୱାଭାବିକ ସଙ୍ଗତିକୁ ଲେଉଟି ଆସିଲେ, ସେତେବେଳେ ସେ ଗଭୀର ଭାବପୂର୍ଣ୍ଣ ଗଦ୍ୟ-କବିତା ଲେଖିବାକୁ ମନ ଦେଲେ ଓ ଯୁଦ୍ଧୋତ୍ତର ପୃଥିବୀର ଚମକପ୍ରଦ ଭାବରେ ଅଭିନବ ଦିଶୁଥିବା ଅବ୍ୟବସ୍ଥିତ ଓ ବିହ୍ୱଳତାର ମାନସିକ ଅବସ୍ଥାକୁ ଚିତ୍ରଣ କଲେ । ଭାଷାରେ ସେ ଆହୁରି ଅଳ୍ପତର ଶବ୍ଦ ବ୍ୟବହାର କରିବାକୁ ଲାଗିଲେ । ସେ ବ୍ୟବହାର କରୁଥିବା ଶବ୍ଦଗୁଡ଼ିକ ସ୍ପଷ୍ଟ ଛବି ଉଦ୍ରେକ କଲା ଓ ଆପଣା ସରଳତାର ତେଜରେ ଉଜ୍ଜ୍ୱଳ ଓ ପ୍ରାଣବନ୍ତ ଦିଶିଲା । ଏହିପରି ଭାବରେ କବି ସଚ୍ଚି ରାଉତରାୟ ଓଡ଼ିଆରେ ଗୋଟିଏ ନୂଆ ପ୍ରକାର କବିତାର ପରଂପରା ଆରମ୍ଭ କଲେ । ସେ ପରଂପରା ବଢ଼ି ଉଠୁଛି ।

ମରମ-ଭାବ-ପ୍ରଧାନ ଲିରିକ୍ କବିତାଠାରୁ କବି ସଚ୍ଚି ରାଉତରାୟଙ୍କ ଉନେ-ଇବା ଓ ଦୂରେଇ ଯିବାର ଉଦାହରଣ ତାଙ୍କ କବିତା "ପ୍ରଥମା ନାୟିକା" । ସେଥିରେ ସେ ଲେଖିଛନ୍ତି—

"ଆକାଶର ଫିକା ଜହ୍ନ—ସାବୁନର ଫେଣ ପରି ଫଫା,
ଆଲୁଅ ଓ ଅଂଧାରର ମଧ୍ୟେ ସେ ଯେ କରିଅଛୁ ରଫା ।
ବହୁ ଦୂରେ ଯଂତ୍ରଶାଳେ ଚିମ୍‌ନୀଟା କାଶେ ନିଜ ଗ୍ରୀବ,
ଧାନ-ସିଡ଼ି-ନଦୀ ଟପି ଆଠଟାର ଡାକଗାଡ଼ି ଧାଏଁ ।
ପଢ଼ିଅଛୁ କବିତାରେ ଏତେବେଳେ କାନ୍ଦେ ଚକ୍ରବାକ,
ହଠାତ୍ ଯେ ଦେଖାହେଲା ବହୁ ଦିନେ ପ୍ରଥମା-ନାୟିକା ।
ମୁଖ ତାର ବ୍ରଣଦୁଷ୍ଟ ହାତରେ ତା ଚମଡ଼ାର ବ୍ୟାଗ୍,
ଶୀର୍ଣ୍ଣ ସାଧା ଗାଲେ ଫୁଟେ ବ୍ୟର୍ଥତାର ଅକପଟ ଦାଗ ।
ତନୁ ତାର ରୋଗଜୀର୍ଣ୍ଣ, ବୁଣେ ତାର ମ୍ଳାନ ମୁହଁଯାକ,
ଶ୍ଳଥ, ରୁକ୍ଷ ଦେହ-ଶିଖା ଢାଙ୍କିଅଛୁ ଖାକିର ପୋଷାକ ।
ଜାପାନୀ କାଗଜଫୁଲ ପରି ଦେହେ ବୟସର ଧୂଳି,
ପଚାରିଲା—"ଭଲ ଅଛ ?" କଣ୍ଠେ ମୋର ବାଣୀ ଗଲା ଗୋଧୂଳି ।

ହସିଲ ପ୍ରତିମା-
ଆକାଶର ନୀଳ ରେଖା ଟେଳୁଆ ମାଟିର ନାଲ୍ ସୀମା
ଛୁଏଁ ଯେଉଁଠାରେ—
ସେଇଠାରେ ସ୍ୱପ୍ନ ଆଉ ବାସ୍ତବର ମୁହାଣ ସେପାରେ
ଦୁହେଁ ଆମେ ହୋଇଥିଲୁ ଠିଆ
ଆମ ପଛେ କଣାଇଥିଲା ଦୀର୍ଘ ଦୁଇ ବର୍ଷର ଦୁନିଆ
ଦୀର୍ଘ ଦୁଇ ବର୍ଷର ଜଗତ—
ଧୂସର, ଧୂମଳ, ଧ୍ୱାନ୍ତ ଭୟଙ୍କର ପୁଣି ଯୁଦ୍ଧରତ ।"

ଅନ୍ୟତମ ପ୍ରଖ୍ୟାତ କବି ଅନନ୍ତ ପଟ୍ଟନାୟକଙ୍କ କବିତାରେ ମରମ ଭାବମୟ ଲିରିକ୍ କବିତା ନୂଆ ନୂଆ ବାଟ ପାଇଲା । ସେ ମାର୍କସବାଦ ଦ୍ୱାରା ପ୍ରଭାବିତ ହୋଇଥିଲେ; କିନ୍ତୁ ରବୀନ୍ଦ୍ରନାଥଙ୍କ ଭାଷା କି ଭାବର କୌଣସି ପ୍ରଭାବ ତାଙ୍କ ଉପରେ ପଡ଼ିନାହିଁ । ତାଙ୍କ କବିତାର ଭାଷା ଅତି ଯତ୍ନରେ ସାଧାରଣ କଥିତ ଭାଷାରୁ ସଂଗୃହୀତ ହୋଇଛି ଓ ନୂତନ ଶୈଳୀ ପ୍ରୟୋଗଦ୍ୱାରା ଏପରି ଭାବେ ବ୍ୟବହୃତ ହୋଇଛି ଯେ ସେ ଭାବବ୍ୟଞ୍ଜକ ହୋଇଛି ଓ ଚମତ୍କାରପ୍ରଦ ହୋଇଛି । ଏ ଭାଷା ସଂଗୀତମୟ, ବର୍ଣ୍ଣବହୁଳ ଓ ସଜ । ଏଥିରେ ସ୍ୱତଃ ସ୍ଫୁରଣ ଅଛି ଓ ଏହା ଜୀବନ୍ତ ପରି ଲାଗେ । କବି ଧାରଣାରେ ବୌଦ୍ଧିକତାର ପ୍ରାବଲ୍ୟ ଅଛି ଓ ଭାବରେ ସାଧାରଣ ମନୁଷ୍ୟ ପ୍ରତି ଉଦାର ସହାନୁଭୂତି ଫୁଟି ଉଠିଛି । କବି ଅନନ୍ତ ପଟ୍ଟନାୟକ ଆଶା, ସାହସ ଓ ମନୁଷ୍ୟ ମନୁଷ୍ୟ ମଧ୍ୟରେ ସାର୍ବଜନୀନ ଭ୍ରାତୃତ୍ୱ ବିଷୟରେ କବିତା ସୃଷ୍ଟି କରିଛନ୍ତି । ତାଙ୍କର 'ଶାନ୍ତ କପୋତ' କବିତାରେ ସେ ଗାଇଛନ୍ତି—

"ଶାନ୍ତ କପୋତ ଆମ ଯାଆରେ
ଉଡ଼ି ଉଡ଼ି ଯାଆରେ
ମରଣର ମୁଅ ଠେଲି ଜୀବନର ଦ୍ୱାରେ
ଯାଆରେ ।"

ସେଇପରି 'ସାଇରେନ୍ ଡାକେ' କବିତାରେ ସେ ଗାଇଛନ୍ତି :---

"ସାଇରେନ୍ ବାଜେ-
କର ଚିତ୍କାର କର
ମୁଖରେ ହସେ ଶାନ୍ତିର ଗଉରବ
ତୁମ ମୈତ୍ରୀର ମହୋତ୍ସବ ।"

ଓଡ଼ିଶାରେ ବର୍ତ୍ତମାନ ଅନେକ କବି ଅଛନ୍ତି ଓ ତାଙ୍କ ଭିତରୁ କେତେ କବି ପ୍ରସିଦ୍ଧ ଓ ଗୁରୁତ୍ୱପୂର୍ଣ୍ଣ ହୋଇ ସାରଲେଣି । ଏ କ୍ଷୁଦ୍ର ଆଲୋଚନାର ସୀମିତ ପରିସର ମଧ୍ୟରେ ସେମାନଙ୍କ କାବ୍ୟକଳାର ଯଥୋଚିତ ଆଲୋଚନା କରିବା ଅସମ୍ଭବ ।

କିନ୍ତୁ ଅତି ଆଧୁନିକ କବିମାନଙ୍କ କୃତିରେ ଭବିଷ୍ୟତ କବିତାର ଗୋଟିଏ ଗୁରୁତ୍ୱପୂର୍ଣ୍ଣ ସୂଚନା ନିହିତ ରହିଛି । ସେମାନଙ୍କର ଉଦ୍ଦେଶ୍ୟ କବିତ୍ୱକୁ ଭାବପ୍ରବଣତା ଓ ରୋମାଣ୍ଟିସିଜମ୍‌ର ପଞ୍ଜାରୁ ମୁକ୍ତ କରିବା । ଏ ଦଳର କବିମାନେ ଭାବୁକତା ପରିବର୍ତ୍ତେ ବିଚାରବୁଦ୍ଧି ସଂପନ୍ନ ଓ ଏମାନଙ୍କ ପନ୍ଥା ବିଶ୍ଳେଷଣାତ୍ମକ ଓ ନିର୍ଦ୍ଧାରଣପୂର୍ଣ୍ଣ । ଏମାନଙ୍କଠାରେ ଅତି ଆବେଗପୂର୍ଣ୍ଣ ଆନ୍ତରିକତା ପରିଲକ୍ଷିତ ହୁଏ । ଟି. ଏସ୍. ଇଲିଅଟ୍, ବୋଦେଲେଆର ଓ ଇଂଲଣ୍ଡର ସତରଶ ଶତାବ୍ଦୀର ମେଟାଫିଜିକାଲ କବିମାନଙ୍କ ଦ୍ୱାରା ଏମାନେ ପ୍ରଭାବିତ । ଏମାନଙ୍କ କବିତାଗୁଡ଼ିକ ଅତି ଆପଣାର ପରି ଲାଗେ ସତ, କିନ୍ତୁ ସେଥିରେ ଖରଧାର ପରି ଶ୍ଳେଷର ଦାଢ଼ ଜକ ଜକ ଦିଶେ । ସେହି ଶ୍ଳେଷାତ୍ମକ ଦୃଷ୍ଟିଭଙ୍ଗୀ ଭାବପ୍ରବଣତାକୁ ଉପହାସ କରେ ଓ ମନୁଷ୍ୟର ଚେତନା ଭିତରେ ଏପରି ଆଉର କ'ଣ ଅଧିକ ସତ ଅଧିକ ଚିରସ୍ଥାୟୀ ହୋଇ ରହିଛି, ତା'କୁ ଖୋଲି ଦେଖାଇବା ଉଦ୍ଦେଶ୍ୟରେ ପରସ୍ପର ପରସ୍ପର ଭାବପ୍ରବଣତାର ସ୍ମରଣ ସଂପର୍କକୁ ଭଣିଭଣା କରି ଓଟାର ଫୋପାଡ଼ି ଦିଏ । କବି ଗୁରୁପ୍ରସାଦ ମହାନ୍ତି ଓ ଭାନୁଜୀ ରାଓ ଏ ଆନ୍ଦୋଳନର ପ୍ରବର୍ତ୍ତକ । 'ନୂତନ କବିତା' ବୋଲି ଗୋଟିଏ କବିତା ସଂକଳନରେ ଏ ଉଭୟଙ୍କର କେତୋଟି କବିତା ପ୍ରକାଶିତ ହୋଇଛି । କବି ରମାକାନ୍ତ ରଥ ପ୍ରମୁଖ ଅନେକ ଉଦୀୟମାନ ଆଧୁନିକ କବି ଏପରି କବିତା ରଚନା କରୁଛନ୍ତି ।

ଭବିଷ୍ୟତରେ ଓଡ଼ିଆ କବିତା କେଉଁ ବାଟ ଧରିବ, ତାହା କହିହେବ ନାହିଁ । ସ୍ୱେ ସ୍ୱଚ୍ଛନ୍ଦ ଗଦ୍ୟକବିତା ଓ ଟି,ଏସ୍, ଇଲିଅଟ୍‌ଙ୍କ ଯୁଗରେ ମଧ୍ୟ କବି ଗଦାଧର ସିଂହସାମନ୍ତ, ମାଧବଚନ୍ଦ୍ର ମିଶ୍ର ଶର୍ମା, ଗୋଲକ ପ୍ରଧାନ ଆଦି କବିଙ୍କ ପରି କବିମାନେ ଅଛନ୍ତି, ଯେଉଁମାନେ ଉପେନ୍ଦ୍ରଭଞ୍ଜ ପ୍ରମୁଖ ପ୍ରାକ୍ ଆଧୁନିକ ଶ୍ରେଷ୍ଠ କବିମାନଙ୍କ ପନ୍ଥା ଅନୁସରଣ କରି କବିତା ରଚନା କରନ୍ତି ଓ ସ୍ୱର୍ଗୀୟ ବିଚ୍ଛନ୍ଦଚରଣ ପଟ୍ଟନାୟକ 'କଳିଙ୍ଗ ଭାରତୀ' ଆନ୍ଦୋଳନ ଆରମ୍ଭ କରିଦେଲେ ଏମାନଙ୍କ କବିତା ଜନସାଧାରଣଙ୍କ ଦ୍ୱାରା ଅଧିକ ଅଧିକ ଆଦୃତ ହେଉଛି । ପାଖେ ଏ ଶ୍ରେଣୀର କବି, ଆରପାଖେ ସ୍ୱଚ୍ଛନ୍ଦ ଗଦ୍ୟ-କବିତା ଓ ଟି·ଏସ୍. ଇଲିଅଟ୍ ପନ୍ଥୀ କବି ଏ ଦୁଇ ଶ୍ରେଣୀ ମଧ୍ୟରେ ବିଭିନ୍ନ ଆଭିମୁଖ୍ୟ ଓ ସ୍ୱରୂପ ନେଇ ନାନା କବି କବିତା ରଚନା କରିବାରେ ଲାଗିଛନ୍ତି ।

ଓଡ଼ିଆ ସାହିତ୍ୟ ଉପରେ ରବୀନ୍ଦ୍ରନାଥଙ୍କ ପ୍ରଭାବ ଅତି ଅଳ୍ପ ସମୟ ଲାଗି ପଡ଼ିଲା ଓ ଚାଲିଗଲା । ସେ ପ୍ରଭାବର କାଳ ପରିସର ମାତ୍ର ଦଶ ବର୍ଷ ହେବ କି ନାହିଁ । ଓଡ଼ିଆ କବିତାର ହଜାରେ ବର୍ଷର ଇତିହାସ ତୁଳନାରେ ତାହା କିଛି ନୁହେଁ । କିନ୍ତୁ ରବୀନ୍ଦ୍ରନାଥଙ୍କ କାବ୍ୟକୃତି ଅମର ହୋଇଯାଇଛି । ସେ ହେଉଛି ଦେଶର ସାର୍ବଜନୀନ ଓ ଆଦର୍ଶ କାବ୍ୟସଂପଦ । କାଳିଦାସଙ୍କ କବିତା ପରି ତାହା ପ୍ରତ୍ୟେକ ଭାରତୀୟର ରକ୍ତରେ ମିଶିଯାଇଛି । ସେ ମନୁଷ୍ୟର ଅବଚେତନ ମନ ଭିତରେ ରହିଛି । ଚିନ୍ତା ଓ ମରମଭାବର ଉଦ୍‌ଗମର ଉତ୍ସ-ମୁଖରେ ଥାଇ ସେ ତାକୁ ରୂପ ଦେଉଛି । ଏହି ଦୃଷ୍ଟିରୁ ଦେଖିଲେ ଭାରତର ଯେ କୌଣସି ଲେଖକ

ରବୀନ୍ଦ୍ରନାଥଙ୍କ କବିତା ପଢ଼ିଛନ୍ତି, ସେହି ଲେଖକଙ୍କ ଚେତନା ଭିତରେ ରବୀନ୍ଦ୍ରନାଥ ନାହାନ୍ତି ବୋଲି କହିବା କଷ୍ଟ । ସେ କବିତ୍ୱର ସମୁଦ୍ର । କେବଳ ଗଭୀର ସାଧନା, ଧ୍ୟାନ ଓ ମନନ ବଳରେ ଆପେ ବଞ୍ଚିଥିବା ଜୀବନ ଓ ଅଙ୍ଗେ ନିଭେଇଥିବା ଅନୁଭୂତ ଓ ଅଭିଜ୍ଞତା ସାହାଯ୍ୟରେ ହିଁ ତାଙ୍କ କବିତାକୁ ବୁଝିବା ସମ୍ଭବ, ଅନ୍ୟଥା ନୁହେଁ । ସେ ତାଙ୍କ ନିଜ କବିତା ବିଷୟରେ ଲେଖିଛନ୍ତି:—

"ମୋର ଗାନ୍, ଏରା ସବ୍ ଶୈବାଲେର ଦଲ୍
ଯେଥାୟ୍ ଜନ୍ମେଛେ ସେଥା ଆପନାରେ କରେନି ଅଚଲ୍
ମୂଲ ନାହିଁ, ଫୁଲ ଆଛେ, ଶୁଧୁ ପାତା ଆଛେ
ଆଲୋର ଆନନ୍ଦ ନିଏ ଜଲେର ତରଙ୍ଗେ ଏରା ନାଚେ ।"

ସେ ଚିରନ୍ତନ କବି । ସେ ସବୁ ଯୁଗର, ସମଗ୍ର ମାନବଜାତିର । ସେ ଗୁରୁ, ସେ ଦ୍ରଷ୍ଟା, ସେ ଅମର ।

—୦—

# ରବୀନ୍ଦ୍ରନାଥ ଏବଂ ଆଧୁନିକ ଭାରତୀୟ ଭାଷା— ଓଡ଼ିଆ

## ଶ୍ରୀ କାଳନ୍ଦୀଚରଣ ପାଣିଗ୍ରାହୀ

ଆଧୁନିକ କୌଣସି ଭାରତୀୟ ଭାଷା ରବୀନ୍ଦ୍ରନାଥଙ୍କ ପ୍ରଭାବ କିମ୍ବା ପ୍ରେରଣାରୁ ମୁକ୍ତ ବୋଲି ଦାବୀ କରିବା ସମ୍ଭବପର ନୁହେଁ । ଯଥାର୍ଥରେ ସେ ଆଧୁନିକ ଭାରତୀୟ ସାହିତ୍ୟର ଗୁରୁ । ଏହି କଥା ଉପରେ ତର୍କ କରିବା ଅର୍ଥ ସମସାମୟିକ ଭାରତୀୟ ସାହିତ୍ୟର ଐତିହାସିକ ବିବର୍ତ୍ତନକୁ ଅସ୍ୱୀକାର କରିବା ।

ଓଡ଼ିଶା ସହିତ ଠାକୁର ପରିବାରଙ୍କ ସମ୍ପର୍କ ଅତି ପ୍ରାଚୀନ । ରବୀନ୍ଦ୍ରନାଥଙ୍କ ପିତାମହ ଦ୍ୱାରକାନାଥ ଓଡ଼ିଶାରେ ପଣ୍ଡୁଆ ଜମିଦାରୀ କ୍ରୟ କରିଥିଲେ । ସେହି ସୂତ୍ରରେ ମହର୍ଷି ଦେବେନ୍ଦ୍ରନାଥ ଏବଂ ତାଙ୍କର ପୁତ୍ର ପୌତ୍ରମାନେ ବହୁ ବାର ଓଡ଼ିଶାକୁ ଆସିଥିଲେ । ରବୀନ୍ଦ୍ରନାଥ ନିଜେ ମଧ୍ୟ ତାଙ୍କ ଯୌବନରେ ଅନେକ ଥର ଓଡ଼ିଶାକୁ ଆସିଛନ୍ତି । ତାଙ୍କ ଲିଖିତ 'ଛିନ୍ନପତ୍ର' ନାମକ ପତ୍ରାବଳୀ ସଂଗ୍ରହରେ ସେ ୧୮୯୧-୯୨ ଖ୍ରୀଷ୍ଟାବ୍ଦରେ ଓଡ଼ିଶା ପ୍ରଦର୍ଶନ କରିଥିବା ଘଟଣାଗୁଡ଼ିକର ଚମତ୍କାର ବର୍ଣ୍ଣନା ପ୍ରକାଶ କରିଛନ୍ତି ।

ଜୀବନର ଶେଷ ପର୍ଯ୍ୟାୟରେ ୧୯୩୯ ମସିହା ମଇ ମାସରେ ଓଡ଼ିଶାର ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ଦ୍ୱାରା ସେ ନିମନ୍ତ୍ରିତ ହୋଇଥିଲେ । ଏହି ନିମନ୍ତ୍ରଣକୁ ସାଗ୍ରହରେ ଗ୍ରହଣକରି ଓଡ଼ିଶାକୁ ସେ ନିଜର ବାସଭୂମି ବୋଲି ମନ୍ତବ୍ୟ ଦେଇଥିବା କଥିତ ହୁଏ । ଓଡ଼ିଶାକୁ ଆସି ସେ ସରକାରୀ ଅତିଥି ରୂପେ ପୁରୀ ସର୍କିଟ ହାଉସରେ ଅବସ୍ଥାନ କରିଥିଲେ । ମଇ ମାସ ୯ ତାରିଖରେ ତାଙ୍କର ଜନ୍ମୋତ୍ସବ ମହା-ସମାରୋହରେ ପୁରୀରେ ଅନୁଷ୍ଠିତ ହୋଇଥିଲା । ଏହି ଉପଲକ୍ଷରେ ବର୍ତ୍ତମାନ ଲେଖକ ଗୋଟିଏ କବିତା ରଚନା କରି ମଧ୍ୟ କବିଙ୍କ ସମକ୍ଷରେ ପାଠ କରିଥିଲି । କବିତାଟିକୁ ଆଦ୍ୟୋପାନ୍ତ ମନୋଯୋଗ ସହିତ ଗ୍ରହଣ କରି ସେ ସନ୍ତୋଷ ପ୍ରକାଶ କରିଥିଲେ ।

ଭୌଗୋଳିକ ଦୃଷ୍ଟିରୁ ଓଡ଼ିଶା କେବଳ ବଙ୍ଗର ଏକାନ୍ତ ନିକଟ ପଡ଼ୋଶୀ ନୁହେ, କିନ୍ତୁ ରୀତିନୀତି ଓ ଆହାର ପରିଚ୍ଛଦ ବିଚାରରୁ ମଧ୍ୟ ଓଡ଼ିଆ ଏବଂ ବଙ୍ଗାଳିମାନେ ପ୍ରାୟ ସମାନ । ଆହୁରି ମଧ୍ୟ ଓଡ଼ିଆ ଏବଂ ବଙ୍ଗଳା ଭାଷାର ଉତ୍ପତ୍ତିସ୍ଥଳ ଗୋଟିଏ । ସାଂସ୍କୃତିକ କ୍ଷେତ୍ରରେ ସମାନ ଭିତ୍ତିଭୂମିରେ ଅବସ୍ଥିତ ରହି ଦୁହିଁଙ୍କ ମଧ୍ୟରେ ସ୍ୱତନ୍ତ୍ର

ଆଦାନପ୍ରଦାନ ଯେପରି ଘନିଷ୍ଠ ଭାବରେ ହୋଇପାରିଛି, ତାହା ଉଲ୍ଲେଖଯୋଗ୍ୟ ।
ଶ୍ରୀ ଚୈତନ୍ୟଙ୍କର ପିତା ଜଗନ୍ନାଥ ମିଶ୍ର ଯାଜପୁରରୁ ଯାଇ ନବଦ୍ୱୀପରେ ରହିଥିଲେ ।
ମାତୃଭୂମିକୁ ଫେରି ତାଙ୍କ ଜୀବନର ଶେଷ ପର୍ଯ୍ୟାୟ ପୁରୀରେ ପରିସମାପ୍ତ ହେବା ପୂର୍ବରୁ ମଧ୍ୟ ଏହି ସମ୍ପର୍କ ଦୁଇ ଅଞ୍ଚଳ ମଧ୍ୟରେ ପ୍ରତିଷ୍ଠିତ ହୋଇଥିଲା । ଉତ୍କଳର ଆଦିକବି ସାରଳା ଦାସଙ୍କର 'ମହାଭାରତ' ପଞ୍ଚଦଶ ଶତାବ୍ଦୀରେ ବଙ୍ଗଭାଷାରେ ଅନୂଦିତ ହୋଇଥିବା ଘଟଣା ଡ଼ ବିଜୟଚନ୍ଦ୍ର ମଜୁମଦାର ଉଲ୍ଲେଖ କରିଛନ୍ତି ।
ଏହିରୂପେ ବହୁ ଶତାବ୍ଦୀ ଧରି ଏହି ଦୁଇ ଅଞ୍ଚଳର ଧର୍ମ ଓ ସାହିତ୍ୟ ମଧ୍ୟରେ ନିକଟତମ ସମ୍ପର୍କ ସ୍ଥାପିତ ହୋଇଥିଲା ।

ତେଣୁ ରବୀନ୍ଦ୍ରନାଥଙ୍କ ଖ୍ୟାତି ଦେଶ ବିଦେଶରେ ପରିବ୍ୟାପ୍ତ ହେବା ପୂର୍ବରୁ ପୁଣି ସେ ନୋବେଲ୍ ପୁରସ୍କାର ପ୍ରାପ୍ତ ହେବା ପୂର୍ବରୁ ମଧ୍ୟ ବ୍ରାହ୍ମମତର ଯେଉଁ ସାର୍ବଜନୀନ ଆଦର୍ଶକୁ ଅର୍ଥାତ୍ ପ୍ରାଚ୍ୟ ପାଶ୍ଚାତ୍ୟର ସର୍ବଶ୍ରେଷ୍ଠ ନୀତିକୁ ସେ ସାହିତ୍ୟରେ ମୁଖ୍ୟଭାବରେ ପ୍ରକାଶ କରିଥିଲେ, ଓଡ଼ିଶାରେ ସେହି ଭାବଧାରା ପ୍ରବେଶ କରିପାରିଥିଲା ।
ଯେଉଁ ବିଖ୍ୟାତ 'ତ୍ରୟୀ' ଆଧୁନିକ ଓଡ଼ିଆ ସାହିତ୍ୟର ମୂଳ ପତ୍ତନ କରିଥିଲେ, ସେମାନଙ୍କ ମଧ୍ୟରୁ ଭକ୍ତକବି ମଧୁସୂଦନ ରାଓ ୧୯୧୨ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୨୮ ତାରିଖରେ ୬୦ ବର୍ଷ ବୟସରେ ରବୀନ୍ଦ୍ରନାଥ ନୋବେଲ୍ ପୁରସ୍କାର ପାଇବାର ଅବ୍ୟବହିତ ପୂର୍ବରୁ ସ୍ୱର୍ଗାରୋହଣ କରିଥିଲେ । ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟଙ୍କର ନବ ବୈଷ୍ଣବ ମତ ପ୍ରଚାରର ଭଳି ମଧୁସୂଦନ ମଧ୍ୟ ନବ ହିନ୍ଦୁମତ ରୂପେ ଆତ୍ମପ୍ରକାଶ କରିଥିବା ବ୍ରାହ୍ମମତରେ ଦୀକ୍ଷିତ ହୋଇଥିଲେ ।

ବ୍ରାହ୍ମମତର ବିଶିଷ୍ଟ ନେତାମାନଙ୍କର ପ୍ରତ୍ୟକ୍ଷ ସମ୍ପର୍କରେ ଆସି ମଧୁସୂଦନ ତାହାଙ୍କ ପୁତ୍ରକନ୍ୟାମାନଙ୍କର ବିବାହ ସମ୍ବନ୍ଧ ବଙ୍ଗୀୟ ଧନୀ ଓ ଶିକ୍ଷିତ ବ୍ରାହ୍ମପରିବାର ସହିତ ସ୍ଥାପନ କରିଥିଲେ । ରବୀନ୍ଦ୍ରନାଥଙ୍କର ବୟୋଜ୍ୟେଷ୍ଠ ରୂପେ ସାମୟିକ ଭାବଦ୍ୱାରା ଅନୁପ୍ରାଣିତ ହେବା ଦିଗରେ ତାହାଙ୍କୁ ପ୍ରଥମ ଓ ସର୍ବାଗ୍ର ଓଡ଼ିଆ କବିର ଆଖ୍ୟା ଦିଆଯାଇପାରେ । ସେ ତାଙ୍କର ଅଧିକାଂଶ କବିତା ପ୍ରକୃତି ଓ ଜୀବନ ଉପରେ ନିବଦ୍ଧ କରି ଓଡ଼ିଆ କବିତା ଓ ସଙ୍ଗୀତକୁ ତାହାର ଭଙ୍ଗୀ ଓ ବିଷୟବସ୍ତୁ ଦୃଷ୍ଟିରୁ ସମ୍ପୂର୍ଣ୍ଣ ନୂତନ ଛାଞ୍ଚରେ ଢାଳିଥିଲେ ।

ମଧୁସୂଦନଙ୍କର କୃତିତ୍ୱ ଅସାମାନ୍ୟ ଥିଲା । କଟକ ବ୍ରାହ୍ମସମାଜର ଆଚାର୍ଯ୍ୟ ରୂପେ ସେ ବ୍ରହ୍ମସଙ୍ଗୀତ ନାମରେ ଯେଉଁ କବିତାଗୁଚ୍ଛ ପ୍ରକାଶ କରିଥିଲେ, ତାହା ରବୀନ୍ଦ୍ରନାଥଙ୍କ କବିତା ସହିତ ତୁଳନୀୟ । ଏହି ପ୍ରାର୍ଥନାସଙ୍ଗୀତଗୁଡ଼ିକ ପାରମ୍ପରିକ ଦେବଦେବୀମାନଙ୍କର ଜଣାଣ ଭଜନଠାରୁ ବିଚ୍ଛିନ୍ନ ହୋଇ ସ୍ରଷ୍ଟାଙ୍କ ସହିତ ସୃଷ୍ଟିର, ପୁଣି ଆତ୍ମା ସହିତ ପରମାତ୍ମାର ଯୋଗସ୍ଥାପନର ସୂଚନା ଦିଏ ।

ଉପନିଷଦର ମହାନ ଭାବଧାରା ଏବଂ ନୈତିକତା ସୁରୁଚି ଶନ୍ଦର ସହଜ ପ୍ରକାଶଦ୍ୱାରା ବ୍ରହ୍ମସଙ୍ଗୀତଗୁଡ଼ିକ ସରଳ ଓ ମାର୍ଜିତ ଭାଷାରେ ଲିଖିତ । ମଧୁସୂଦନଙ୍କ

ଅନ୍ୟତମ ନୂତନ ସମୀକ୍ଷା ହେଉଛି ଓଡ଼ିଆ ଭାଷାରେ ସର୍ବପ୍ରଥମେ ସନେଟ ରଚନା କରିବା । ଏହି ସନେଟଗୁଡ଼ିକର ସମଷ୍ଟି 'ବସନ୍ତଗାଥା' ନାମରେ ପରିଚିତ । ସମସାମୟିକ ବିଷୟବସ୍ତୁକୁ ନେଇ ସେଗୁଡ଼ିକ ରଚିତ । ମଧୁସୂଦନଙ୍କର ଶିକ୍ଷାଗୁରୁ କବିବର ରାଧାନାଥଙ୍କ ସମ୍ପର୍କରେ ଏବଂ ଅନ୍ୟ କେତେକଙ୍କ ବିଷୟରେ ମଧ୍ୟ କେତେ ଗୋଟି ସନେଟ ରଚିତ । ଗୋଟିଏ ସନେଟରେ ସେ ତାଙ୍କର ଜନ୍ମଭୂମି ଉତ୍କଳର ବନ୍ଦନା କରି ଲେଖିଛନ୍ତି—

"କୋଟିଏ ସନ୍ତାନ ମା,ଗୋ ଧରିଅଛୁ କୋଳେ
ଗୋଟିଏ ମନୁଷ୍ୟ କିନ୍ତୁ ନ ଦେଖିଲି ତୋଳେ ।"

ଏଥି ସହିତ ରବୀନ୍ଦ୍ରନାଥଙ୍କ ବଙ୍ଗଜନନୀ କବିତାର ନିମ୍ନ ଉଦ୍ଧୃତାଂଶର କେତେକ ସାମଞ୍ଜସ୍ୟ ଲକ୍ଷ୍ୟ କରିଯାଏ ।

"ସାତ କୋଟି ସନ୍ତାନେର ହେ ବଙ୍ଗଜନନୀ
ରେଖେଛ ବାଙ୍ଗାଲି କରେ ମାନୁଷ କରନି ।"

ମଧୁସୂଦନଙ୍କ ଦେଶପ୍ରୀତି ସମସ୍ତ ସଂକୀର୍ଣ୍ଣତା ଓ ପ୍ରାଦେଶିକତାକୁ ଅତିକ୍ରମ କରି "ଭାରତ-ଭାବନା" ଓ "ଉତ୍କଳ-ବନ୍ଦନା" କବିତାରେ ରୂପାୟିତ ହୋଇଛି । ରବୀନ୍ଦ୍ରନାଥଙ୍କର ଏହି ଶ୍ରେଣୀର କବିତାର ଭାବଧାରା ସଙ୍ଗେ ତାହାର ବହୁ ସାମଞ୍ଜସ୍ୟର ସାକ୍ଷ୍ୟ ଦେଉଥାଏ । "ଉତ୍କଳ-ବନ୍ଦନା" ଓ "ନଦୀ ପ୍ରତି" କବିତାଦ୍ୱୟ ପ୍ରାଚୀନ ଓଡ଼ିଆ ଛନ୍ଦ ନିୟମରେ ରଚିତ ହେଲେହେଁ ଶେଷୋକ୍ତ କବିତାଟି ରବୀନ୍ଦ୍ରନାଥଙ୍କ "ନିର୍ଝରେର ସ୍ୱପ୍ନଭଙ୍ଗ" କବିତାକୁ ସ୍ମରଣ କରାଇଦିଏ । ବ୍ରହ୍ମସଙ୍ଗୀତଗୁଡ଼ିକରେ ମଧ୍ୟ ଏହା ଦ୍ରଷ୍ଟବ୍ୟ । ଏହି ସଙ୍ଗୀତଗୁଡ଼ିକ ୧୯୪-୯୫ ଖ୍ରୀଷ୍ଟାବ୍ଦରେ ରଚିତ । ଏଥିରେ ସନ୍ନିବିଷ୍ଟ ଶତାଧିକ ଗୋଟି ସଙ୍ଗୀତ ମଧ୍ୟରୁ କେତେକର ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ରବୀନ୍ଦ୍ରନାଥଙ୍କ ସଙ୍ଗୀତ ସହିତ ଦେଖାଯାଇଥାଏ । ନିମ୍ନୋକ୍ତ ସଙ୍ଗୀତଟିର କେତେକ ଅଂଶ ଗୀତାଞ୍ଜଳିର ପ୍ରଥମ ସଙ୍ଗୀତଟି ସହିତ ତୁଳନୀୟ ।

"ତୁମ୍ଭର ଇଚ୍ଛା କରହେ ପୂର୍ଣ୍ଣ ମୋର ଏ ଜୀବନେ
ଦଗ୍ଧ କର ମୋ ବାସନାରାଶି ପୁଣ୍ୟର ହୁତାଶନେ
ଏ ଜୀବନର ସକଳ ଦ୍ୱନ୍ଦ
ନାଶ ହେ ପ୍ରଭୁ ପରମାନନ୍ଦ
ହର ହେ ମୋର କୁଟିଳ ବନ୍ଧ
ମୁକ୍ତ ଉତ୍ସବ ବିସ୍ତାର କର ହୃଦୟ-ନିକେତନେ ।"

ମଧୁସୂଦନଙ୍କ ବିଖ୍ୟାତ ସୁଦୀର୍ଘ କବିତା "ଋଷିପ୍ରାଣେ ଦେବାବତରଣ" ତାହାଙ୍କର ପରଲୋକଗତ ଜାମାତା ବିଜୟଚନ୍ଦ୍ର ମଜୁମଦାରଙ୍କଦ୍ୱାରା ବଙ୍ଗଭାଷାରେ ଅନୂଦିତ ହୋଇ ତତ୍କାଳୀନ "ନବ୍ୟ ଭାରତ" ନାମଧେୟ ମାସିକ ପତ୍ରିକାରେ ପ୍ରକାଶିତ ହୋଇଥିବା ଏବଂ ରବୀନ୍ଦ୍ରନାଥ ତାହାର ପ୍ରଶଂସା କରିଥିବା ଜଣାଯାଏ ।

ଏହିରୂପେ ରବୀନ୍ଦ୍ରନାଥ ତଥା ଅନ୍ୟାନ୍ୟ ବଙ୍ଗୀୟ କବିମାନଙ୍କ ସମେତ ୱାର୍ଡ୍‌ସୱାର୍ଥ ପ୍ରମୁଖ ଇଂରେଜ କବିମାନଙ୍କଦ୍ୱାରା ଓଡ଼ିଆ ସାହିତ୍ୟ ପ୍ରଭାବିତ ହୋଇଥିଲା । ଆଧୁନିକ ଓଡ଼ିଆ ସାହିତ୍ୟର ଅଗ୍ରଦୂତ ରୂପେ ଯେଉଁ ବିଖ୍ୟାତ 'ତ୍ରୟୀ'ଙ୍କର ଆବିର୍ଭାବ ଘଟିଥିଲା, ତାଙ୍କ ମଧ୍ୟରୁ ଅନ୍ୟ ଦୁଇ ଜଣ ଫକୀରମୋହନ ସେନାପତି ଓ ରାଧାନାଥ ରାୟ ଯଥାକ୍ରମେ ଗଳ୍ପ, ଉପନ୍ୟାସ ଓ କାବ୍ୟରଚନାରେ କୃତିତ୍ୱ ଅର୍ଜନ କରିଥିଲେ । ସେ ଦୁହେଁ ସ୍କଟ, ବାଇରନ, ଡିକେନସ ପ୍ରମୁଖ ଇଂରେଜ କବି ଔପନ୍ୟାସିକଙ୍କଦ୍ୱାରା ତଥା ତତ୍କାଳୀନ ବଙ୍ଗୀୟ ଲେଖକମାନଙ୍କଦ୍ୱାରା ଯେପରି ପ୍ରଭାବିତ ହୋଇଥିଲେ, ରବୀନ୍ଦ୍ରନାଥଙ୍କଦ୍ୱାରା ସେତେ ଦୂର ନୁହେ । ଅବଶ୍ୟ ସବୁ କବି ସାହିତ୍ୟିକଙ୍କର ମୌଳିକ ଉତ୍ସ ଥିଲା ସଂସ୍କୃତ ସାହିତ୍ୟ ।

ମଧୁସୂଦନଙ୍କ ପରବର୍ତ୍ତୀ କବିମାନଙ୍କ ମଧ୍ୟରେ ନନ୍ଦକିଶୋର ବଳଙ୍କର 'ପ୍ରଭାତ ସଙ୍ଗୀତ' ଓ 'ସନ୍ଧ୍ୟା ସଙ୍ଗୀତ' ନାମକ ଦୁଇଟି କବିତାଗୁଚ୍ଛ ଓ ଗୋଦାବରୀଶ ମିଶ୍ରଙ୍କ 'କଳିକା', 'କିଶଳୟ', 'ଆଲେଖିକା', 'ଗୀତାୟନ' କବିତାବଳୀର ନାମ-କରଣରୁ ରବୀନ୍ଦ୍ରନାଥଙ୍କୁ ସ୍ମରଣ କରାଯାଇପାରେ । କିନ୍ତୁ ନନ୍ଦକିଶୋର ଓ ଗୋଦାବରୀଶ ଉଭୟ ଥିଲେ ଓଡ଼ିଆ କାହାଣୀ କବିତାର ଭଙ୍ଗୀ ସ୍ରଷ୍ଟା ଏବଂ ସେମାନେ ଯେଉଁ କବିତାର ଆଙ୍ଗିକ ଗ୍ରହଣ କରିଥିଲେ, ତାହା ଓଡ଼ିଶାର ଏକାନ୍ତ ମୌଳିକ । ପୁଣି ଏହା ଲୋକଗାଥାର ଧାରାବାହିକ ପରମ୍ପରାର ସ୍ୱାତନ୍ତ୍ର୍ୟ ଓ ମାଧୁର୍ଯ୍ୟ ସମ୍ପୂର୍ଣ୍ଣ ରକ୍ଷା କରିଛି ।

ଉତ୍କଳମଣି ଗୋପବନ୍ଧୁଙ୍କ ପ୍ରତିଷ୍ଠିତ ବନବିଦ୍ୟାଳୟର ଗୋଦାବରୀଶ ଥିଲେ ଅନ୍ୟତମ ପ୍ରସିଦ୍ଧ ଶିକ୍ଷକ । ଆଧୁନିକ ଉତ୍କଳର ଜନ୍ମଦାତା ଗୋପବନ୍ଧୁ ଶାନ୍ତିନିକେତନ ପରିଦର୍ଶନ କରିଥିଲେ । କିନ୍ତୁ ଶାନ୍ତିନିକେତନ ପ୍ରତିଷ୍ଠିତ ହେବା ପୂର୍ବରୁ ସତ୍ୟବାଦୀ ବନବିଦ୍ୟାଳୟ ସଗଠିତ ହୋଇଥିଲା । ସତ୍ୟବାଦୀର ପଣ୍ଡିତ ନୀଳକଣ୍ଠ ଓ ପଣ୍ଡିତ ଗୋଦାବରୀଶ ଏବଂ ପରବର୍ତ୍ତୀ ନାରୀକବି କୁନ୍ତଳାକୁମାରୀ ଦେବୀଙ୍କ ସମେତ ସେମାନଙ୍କର ସମସାମୟିକ ପଦ୍ମଚରଣ ଓ ଲକ୍ଷ୍ମୀକାନ୍ତ ରବୀନ୍ଦ୍ର ରଚନାବଳୀଦ୍ୱାରା ତଥା ଇଂରେଜ କବି ଟେନିସନ, ୱାର୍ଡ୍‌ସୱାର୍ଥ, କିଟ୍‌ସ କିମ୍ବା ସେଲିଙ୍କଦ୍ୱାରା ଉଦ୍‌ବୁଦ୍ଧ ହୋଇଥିବା ବିଚିତ୍ର ନୁହେଁ । ଅବଶ୍ୟ ଉଦ୍‌ବୁଦ୍ଧ ହେବା ଓ ପ୍ରଭାବିତ ହେବା ଦୁଇଟି ସ୍ୱତନ୍ତ୍ର କଥା । ନୀଳକଣ୍ଠ ଓଡ଼ିଆ କବିତାରେ ଟେନିସନଙ୍କର 'ପ୍ରିନ୍‌ସେସ' ଏବଂ 'ଏନକ୍ ଆର୍ଡ଼େନ' କାବ୍ୟକୁ 'ପ୍ରଣୟିନୀ' ଓ 'ଦାସନାୟକ' ନାମରେ ରୂପାନ୍ତର କରିଥିଲେ ଓ ଗୋଦାବରୀଶ ମଧ୍ୟ ୱାର୍ଡ୍‌ସୱାର୍ଥଙ୍କର କେତେକ କବିତା ଅନୁବାଦ କରିଥିଲେ । ଗାଥା କବିତାର ଅନ୍ୟତମ ଶ୍ରେଷ୍ଠ କବି ପଦ୍ମଚରଣ ଏକଦା ପ୍ରକାଶ କରିଥିଲେ ଯେ ନିଜସ୍ୱ ହରାଇବା ଭୟରେ ସେ ରବୀନ୍ଦ୍ରନାଥଙ୍କ ରଚନାପାଠରୁ ବିରତ ହୋଇଥାନ୍ତି । ତାଙ୍କର ବିଶ୍ଳେଷଣ ଠିକ କିମ୍ବା ଭୁଲ ହୋଇପାରେ, କିନ୍ତୁ ଦୁଇଟି ଭାଷା ମଧ୍ୟରେ ସାମଞ୍ଜସ୍ୟ ଅତି ନିକଟବର୍ତ୍ତୀ ଥିବାରୁ ଗୋଟିକର ଅନ୍ୟଟି ଉପରେ ପ୍ରଭାବ

ବିସ୍ତାର ଅତି ସହଜ । ସେହି କାରଣରୁ ସମସାମୟିକ ଲେଖକମାନେ ମୌଳିକତା ହରାଇବା ଭୟରେ ସାବଧାନତା ଅବଲମ୍ବନ କରିଥିଲେ ।

ଆଉ ଗୋଟିଏ ବିଷୟ ସ୍ମରଣ କରିବା ଉଚିତ । ଆଧୁନିକ ଓଡ଼ିଶାର କବି ଓ ଲେଖକମାନେ ମଧ୍ୟବିତ୍ତ କିମ୍ବା ନିମ୍ନ ମଧ୍ୟବିତ୍ତ ଶ୍ରେଣୀରୁ ଆସିଥିବା ହେତୁ ରବୀନ୍ଦ୍ରନାଥଙ୍କ ନିର୍ମଳ ମଧୁର କଳ୍ପନାବିଳାସ ସେମାନଙ୍କ ପକ୍ଷରେ ଅନଧିଗମ୍ୟ ଥିଲା । ଏହା ଫଳରେ ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟଙ୍କ ଉତ୍କଳ ଆଗମନ ପରେ ସୂକ୍ଷ୍ମ ଭକ୍ତିମୂଳକ ବୈଷ୍ଣବଧର୍ମର ନୂତନ ପ୍ରଭାବ ସତ୍ତ୍ୱେ ଓଡ଼ିଆ ସାହିତ୍ୟ ଅଳଙ୍କାରବହୁଳ ସ୍ୱକୀୟ ପ୍ରକାଶଭଙ୍ଗୀ ଓ ପାରମ୍ପରିକ ସହଜ ବାସ୍ତବତାକୁ ବହୁ ପରିମାଣରେ ରକ୍ଷାକରି ଆସିଛି । ଚଳିତ ଶତାବ୍ଦୀର ପ୍ରାରମ୍ଭରେ ନୀଳକଣ୍ଠ, ଗୋଦାବରୀଶ ଏବଂ ପଦ୍ମଚରଣ, ଲକ୍ଷ୍ମୀକାନ୍ତ ଆଦି କେତେକ ପରିମାଣରେ ପାରମ୍ପରିକ ଛନ୍ଦୋବଦ୍ଧ ନିୟମକୁ ଅତିକ୍ରମ କରି ଯାଇଛନ୍ତି ଏବଂ ସାର୍ଥକ କବିତା ରଚୟିତା ରୂପେ ଓଡ଼ିଶାର ଗୌରବମୟ ଇତିହାସ ତଥା ଏହାର ଶାନ୍ତ ପଲ୍ଲୀଶ୍ରୀର ପରିବେଶ ପୁଣି କୁଟୀର ଏବଂ ମନ୍ଦିର ରାଜିର ଭଗ୍ନାବଶେଷକୁ ଆଶ୍ରୟକରି ପ୍ରେମ-କବିତା ଓ ଜାତୀୟ ସାହିତ୍ୟ ରଚନା କରିଛନ୍ତି ।

ଆଧୁନିକ ଯୁଗର ସୁପରିଚିତ କବି ଓ ସମାଲୋଚକ ଶ୍ରୀ ଅନନ୍ତ ପଟ୍ଟନାୟକଙ୍କ ଭାଷାରେ ଆହୁରି ମଧ୍ୟ ଉଲ୍ଲେଖଯୋଗ୍ୟ ଯେ ଓଡ଼ିଆମାନେ ଭାରତରେ ଅନ୍ୟ କେତେକଙ୍କ ସହିତ ସର୍ବଶେଷରେ ଇଂରେଜମାନଙ୍କଦ୍ୱାରା ବିଜିତ ହୋଇଥିବାରୁ ପାଶ୍ଚାତ୍ୟ ଶିକ୍ଷାଲାଭ କରିବା ଦିଗରେ ମଧ୍ୟ ସେମାନଙ୍କର ସ୍ଥାନ ପଛରେ ପଡ଼ିଗଲା । ତେଣୁ ସେମାନେ ପ୍ରାଚୀନ ପଦ୍ଧତିର ସାହିତ୍ୟ ଅନୁସରଣ କରିବାକୁ ବାଧ୍ୟ ହୋଇଥିଲେ ଏବଂ ସେମାନଙ୍କର ପ୍ରାଣଶକ୍ତିର ନବୀକରଣ ଅନେକ ପରେ ଆସିଥିଲା । କିନ୍ତୁ ଏହା ଆସିଥିଲା ଯେତେବେଳେ ୧୯୨୦ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ଜାତୀୟ ଜାଗରଣ ସହିତ ଗୋଟିଏ କବି ଓ ସାହିତ୍ୟିକଗୋଷ୍ଠୀ ପାଶ୍ଚାତ୍ୟ ସମୀରଣ ପ୍ରବେଶ ଲାଗି ସକଳ ଦ୍ୱାର ଉନ୍ମୁକ୍ତ କରିଦେଲେ । ଏହି ଲେଖକମାନଙ୍କର ପଥ ପୂର୍ବସୂରୀମାନଙ୍କଦ୍ୱାରା କୃତ ପ୍ରସ୍ତୁତ ଓ ପରିଷ୍କୃତ ହୋଇଥିଲା ଏବଂ ସେମାନଙ୍କର ଆବିର୍ଭାବ ଥିଲା ଏକ ଐତିହାସିକ ପ୍ରୟୋଜନ ।

ତତ୍କାଳୀନ ରାଜନୈତିକ ଆନ୍ଦୋଳନ ଓ ସଂଘର୍ଷ ଫଳରେ ଯେଉଁ ଅବସାଦ ଓ ଅସ୍ଥିରତା ଦେଖା ଦେଇଥିଲା ଓ ସାଂସ୍କୃତିକ ତଥା ସାହିତ୍ୟିକ ବାତାବରଣକୁ ନିଷ୍ପେଷ୍ଟ ଓ ନିର୍ବୀର୍ଯ୍ୟ କରି ପକାଇଥିଲା, ତାହାରି ମଧ୍ୟରେ ସେମାନେ ଏକ ନୂତନ ରସାନୁଭୂତିର ବୈପ୍ଳବିକ ଚେତନା ଆଣି ଦେଇଥିଲେ । ପ୍ରାଚୀନ ପ୍ରତିକ୍ରିୟାଶୀଳ ସମାଲୋଚନାର ସମ୍ମୁଖୀନ ହେବା ପାଇଁ ସେମାନଙ୍କୁ ସେତେବେଳେ ଯେପରି ପଡ଼ିଥିଲା, ସେହିପରି ଏବେ ମଧ୍ୟ ସେମାନେ ରବୀନ୍ଦ୍ରନାଥଙ୍କଦ୍ୱାରା ଆକ୍ରାନ୍ତ ହୋଇ ଥିବାର ଚିତ୍କାର ଶୁଣାଯାଇଥାଏ । ମାତ୍ର ଯଥାର୍ଥରେ ରବୀନ୍ଦ୍ରନାଥଙ୍କ ଦ୍ୱାରା ସେମାନେ

ଯେପରି ପ୍ରଭାବିତ ହୋଇଥିଲେ, ସେଲି, ବାଇରନ୍,କୀଟ୍ସ୍, ଟେନିସନ୍ କିମ୍ବା ଓ୍ୱାର୍ଡ଼ସ୍-ଓ୍ୱାର୍ଥ ଓ ଅନ୍ୟାନ୍ୟ ୟୁରୋପୀୟ ସାହିତ୍ୟିକମାନଙ୍କଦ୍ୱାରା ମଧ୍ୟ ସେହିପରି । କଲେଜ ଗ୍ରହ ଥିବା ସମୟରୁ ସେମାନେ ଗୋଟିଏ ସାହିତ୍ୟଗୋଷ୍ଠୀ ଗଠନ କରି "ଶକ୍ତିସାଧନ" ନାମରେ ଏକ ଲିଖିତ ପତ୍ରିକା ପ୍ରକାଶ କରୁଥିଲେ । ଏହି ଶିଶୁ ସଂସ୍ଥାଟିର ନାମ ପ୍ରଥମେ 'ନନ୍‌ସେନ୍‌ସ କ୍ଲବ' ରଖା ଯାଇଥିଲା ଏବଂ ପରେ ଏହାର ଉପରେ ପ୍ରତିଷ୍ଠିତ ହୋଇଥିଲା ସବୁଜସାହିତ୍ୟ ସମିତି । ଉକ୍ତ ସମିତିର ମୁଖପତ୍ର ରୂପେ 'ଯୁଗବୀଣା' ମାସିକ ପତ୍ର ପ୍ରକାଶିତ ହୁଏ ଏବଂ ଆଧୁନିକ ଲେଖକମାନଙ୍କ ଗଳ୍ପ, କବିତା ଓ ସାହିତ୍ୟ ଆଲୋଚନାରେ ମଣ୍ଡିତ ହୁଏ ତାହାର କଳେବର । 'ଯୁଗବୀଣା' ମାସିକ ପତ୍ରିକାର ପ୍ରଥମ ସମ୍ପାଦକ ଥିଲେ ଶ୍ରୀ ହରିହର ମହାପାତ୍ର ।

ସବୁଜ ନାମରେ ପରିଚିତ ଏହି ଆଧୁନିକ ଲେଖକଗୋଷ୍ଠୀ ପ୍ରାଚୀନ କବିତାର ଭାଷାଡ଼ମ୍ବର ଏବଂ ଅଳଙ୍କାର ଓ ଜଟିଳ ଛନ୍ଦବିନ୍ୟାସଠାରୁ ବିଦାୟ ନେଇ ସତେଜତା, ସ୍ପନ୍ଦନ, ଅନୁଭୂତି, ମାଧୁର୍ଯ୍ୟ ଏବଂ ସରଳ ସୌନ୍ଦର୍ଯ୍ୟର ଲାଳିତ୍ୟ ଆଣିଲେ ଓଡ଼ିଆ କବିତାରେ । ତଥାପି ସେମାନଙ୍କ ବିରୁଦ୍ଧରେ ଏକ ବିଧିବଦ୍ଧ ଆକ୍ରମଣର ଉଦ୍ୟମଦ୍ୱାରା ସେମାନେ ରବୀନ୍ଦ୍ରନାଥଙ୍କର ଅନୁଗାମୀ ବୋଲି ଚିତ୍କାର ଉଠାଇ ଆଧୁନିକ କବିତାର ପ୍ରଗତି ପଥରେ ବାଧା ସୃଷ୍ଟି କରାଯାଇଥିଲା । କିନ୍ତୁ ସବୁଠାରୁ ଆଶ୍ଚର୍ଯ୍ୟର କଥା ଏହି ଯେ ସବୁଜ ଲେଖକମାନଙ୍କର ଯେଉଁମାନେ ପ୍ରତିରୋଧ କରିଥିଲେ, ସେହିମାନେ ହିଁ ଅତି ପ୍ରତ୍ୟକ୍ଷ ଭାବରେ ରବୀନ୍ଦ୍ରନାଥଙ୍କ ଅନୁକରଣ କରିବା ଏବଂ ତାଙ୍କର ପଂକ୍ତିଗୁଡ଼ିକ ପର୍ଯ୍ୟନ୍ତ ଅବିକଳ ଓଡ଼ିଆ ଭାଷାରେ ରଖିଦେବା ଦୋଷରେ ଦାୟୀ ହେଲେ ବୋଲି ଶ୍ରୀ ଅନନ୍ତ ପଟ୍ଟନାୟକ ଦୃଢ଼ମତ ଦେଇଛନ୍ତି । ବହୁଳାଂଶରେ ସେମାନେ ରବୀନ୍ଦ୍ରନାଥ-ଙ୍କର ଏକ ସୌଖୀନ ଓଡ଼ିଆ ସଂସ୍କରଣ ଭାବରେ ଦେଖାଦେବାର ଅସଲ କାରଣ ହେଲା ଏହି ଯେ ରବୀନ୍ଦ୍ର ରଚନାର ବାହ୍ୟ ଆଙ୍ଗିକଦ୍ୱାରା ସେମାନେ ଯେପରି ଅଭିଭୂତ ହେଲେ, ତାଙ୍କର ଗଭୀର ଆଧ୍ୟାତ୍ମିକତା ଓ ଚିନ୍ତାର ସୂତ୍ରକୁ ସେପରି ଧରିପାରିଲେ ନାହିଁ । ଶ୍ରୀ ପଟ୍ଟନାୟକଙ୍କ ମତରେ ଆଜି ମଧ୍ୟ ସେମାନେ ଏହିପରି ଧର୍ମରୁ ନିଷ୍କୃତି ଲଭି କରିପାରି ନାହାନ୍ତି, ଯଦିବା ସବୁଜଗୋଷ୍ଠୀର ପ୍ରଧାନ ଲେଖକମାନେ ନିଜ ପାଇଁ ସ୍ୱତନ୍ତ୍ର ପନ୍ଥା ଆବିଷ୍କାର କରିନେଇଛନ୍ତି । ସବୁଜ ସଂଗଠନର ପ୍ରଧାନ ଉଦ୍ୟୋକ୍ତା ଶ୍ରୀ ଅନ୍ନଦାଶଙ୍କର ରାୟ ତାଙ୍କର ରଚନାର ମାଧ୍ୟମ ରୂପେ ବଙ୍ଗଳା ଭାଷାକୁ ଗ୍ରହଣ କରି ଓଡ଼ିଆକୁ ତ୍ୟାଗ କରିଥିଲେ ହେଁ ତାଙ୍କର ପ୍ରାଥମିକ କଳ୍ପନା-ବିଳାସରେ ଓଡ଼ିଆ ସାହିତ୍ୟରେ ସେ ଯେଉଁ ଅକ୍ଷୟ ଚିହ୍ନ ରଖିଯାଇଛନ୍ତି, ତାହା ଏବେ ମଧ୍ୟ ଲିଭି ଯାଇ-ନାହିଁ ଏବଂ ଏବେ ମଧ୍ୟ ସେ ଯୁବକଗୋଷ୍ଠୀଦ୍ୱାରା ସ୍ନେହ ଓ ଶ୍ରଦ୍ଧାର ସହିତ ସ୍ମରିତ ହୁଅନ୍ତି । ବୈକୁଣ୍ଠନାଥଙ୍କ ରଚନାର ଶକ୍ତି ଓ ସୌନ୍ଦର୍ଯ୍ୟର ଗାମ୍ଭୀର୍ଯ୍ୟ ରୂପ ଏବେ ମଧ୍ୟ ଅକ୍ଷୁଣ୍ଣ ରହିଛି ଏବଂ ଏବେ ମଧ୍ୟ ରୂପକ ଓ ରହସ୍ୟବାଦର କବି ରୂପେ ତାଙ୍କ ରଚନା ପ୍ରଧାନ ସାକ୍ଷ୍ୟ ଦେଇଥାଏ ।

ଗଦ୍ୟସାହିତ୍ୟ ବିସ୍ତରରୁ ରବୀନ୍ଦ୍ରନାଥଙ୍କ ମାର୍ଜିତ ଓ ସମ୍ଭ୍ରାନ୍ତ ରୀତିର ଧାରା ବିଶେଷ ଭାବରେ ଜଣେ ଗଦ୍ୟଲେଖକଙ୍କଠାରେ ଲକ୍ଷିତ ହୁଏ । ସେ ହେଉଛନ୍ତି ବର୍ତ୍ତମାନ ବିଲୁପ୍ତ; କିନ୍ତୁ ଏକଦା ସୁବିଖ୍ୟାତ "ଉତ୍କଳସାହିତ୍ୟ" ପତ୍ରିକାର ସୁଯୋଗ୍ୟ ସମ୍ପାଦକ ପରଲୋକଗତ ବିଶ୍ୱନାଥ କର । ସେ କାଳରେ ଓଡ଼ିଆ ସାହିତ୍ୟର ଏହି ଶ୍ରେଷ୍ଠ ପତ୍ରିକା ସବୁଜ ଲେଖକମାନଙ୍କୁ ନିଜ ବକ୍ଷକୁ ଟାଣି ନେଇଥିଲା । ସେମାନଙ୍କର ଲିଖିତ କବିତା, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ ଏବଂ ଆଲୋଚନାଦ୍ୱାରା ତାହାର ପୃଷ୍ଠା ପୂର୍ଣ୍ଣ ହୋଇ ଉଠିଥିଲା । ନଅ ଜଣ ଲେଖକଙ୍କଦ୍ୱାରା ଲିଖିତ ଓ ଧାରାବାହିକ ଭାବରେ ପ୍ରକାଶିତ 'ବାସନ୍ତୀ' ଉପନ୍ୟାସଟି ମଧ୍ୟ ଉତ୍କଳ ସାହିତ୍ୟରେ ପ୍ରତି ମାସରେ ସ୍ଥାନ ପାଇଥିଲା । ତାହାପରେ ସବୁଜ ସାହିତ୍ୟ ସମିତିର ସଂଗଠନ କରାଯାଇ ତାହାର ମାଧ୍ୟମରେ ଏହି ଉପନ୍ୟାସଟି ପୁସ୍ତକ ଆକାରରେ ପ୍ରକାଶିତ ହୁଏ । ସେତେବେଳେ ପ୍ରାଚୀନ ଓ ନବୀନ ଲେଖକମାନଙ୍କ ପାଇଁ ସବୁଜ ସାହିତ୍ୟ ସମିତି ଏକ ଦେଶବ୍ୟାପୀ ସ୍ପନ୍ଦନ ସୃଷ୍ଟି କରିଥିଲା । ଓଡ଼ିଆ ଗଦ୍ୟର ଶ୍ରେଷ୍ଠ ଲେଖକ ରୂପେ ବିଶ୍ୱନାଥ ପ୍ରତିଷ୍ଠା ଲାଭ କରିଥିଲେ । ବ୍ରାହ୍ମଧର୍ମ ଗ୍ରହଣକରି ସେ କେବଳ ବ୍ରାହ୍ମସମାଜର ଧର୍ମଯାଜକ ରୂପେ ୰ ମଧୁସୂଦନ ରାଓଙ୍କର ଉତ୍ତରାଧିକାରୀ ହୋଇ ନ ଥିଲେ, ସାହିତ୍ୟ-କ୍ଷେତ୍ରରେ ମଧ୍ୟ ଶିକ୍ଷକ ଓ ଉପଦେଷ୍ଟା ରୂପେ ପରିଗଣିତ ହୋଇଥିଲେ । ତାଙ୍କର ବିଶ୍ଳେଷଣାତ୍ମକ ଶକ୍ତିଶାଳୀ ଗଦ୍ୟର ଶୈଳୀ ସଂସ୍କୃତାନୁସାରୀ ଥିଲା ଏବଂ ସବୁଠାରୁ ଅସାଧାରଣ ଥିଲା ତାଙ୍କର ମୌଳିକତା ।

ସବୁଜ ଗୋଷ୍ଠୀର ଆଧ୍ୟାତ୍ମିକ ଗୁରୁ ରୂପେ ବିଶ୍ୱନାଥ କର ହିଁ ୧୯୩୧ ଖ୍ରୀଷ୍ଟାବ୍ଦରେ ଏହି ସଂସ୍ଥାର ପ୍ରଥମ ଗ୍ରନ୍ଥ "ସବୁଜ କବିତା"ର ପ୍ରକାଶକ ହେଲେ । ସବୁଜ କବିତାରେ ଅନ୍ନଦାଶଙ୍କର, ହରିହର ମହାପାତ୍ର, ବୈକୁଣ୍ଠନାଥ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜୀ ତଥା ବର୍ତ୍ତମାନ ଲେଖକଙ୍କର କେତେକ କବିତା ସନ୍ନିବିଷ୍ଟ ଥିଲା । ପୁସ୍ତକଟି ଶ୍ରୀ ଅନ୍ନଦାଶଙ୍କରଙ୍କଦ୍ୱାରା ନାମିତ ହୋଇଥିଲା ଏବଂ ତାହାକୁ ଭିତ୍ତିକରି ଶ୍ରୀ ଶରତଚନ୍ଦ୍ରଙ୍କ ଉଦ୍ୟମରେ ସବୁଜ ସମିତି ଗଠିତ ହେଲା । ସବୁଜ ସମିତିର ଅନ୍ୟତମ ସଭ୍ୟ ହରିଶ୍ଚନ୍ଦ୍ର ବଡ଼ାଲ ଓ ଅଧ୍ୟାପକ ଶ୍ରୀ ଗିରିଜାଶଙ୍କର ରାୟଙ୍କ ଗଦ୍ୟଶୈଳୀ ଉପରେ ରବୀନ୍ଦ୍ରନାଥଙ୍କ ପ୍ରଭାବ ବିସ୍ତୃତ କରାଯାଇପାରେ । କିନ୍ତୁ ଫକୀରମୋହନ ସେନାପତି, ଗୋପାଳଚନ୍ଦ୍ର ପ୍ରହରାଜ, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ ଓ ଗୋଦାବରୀଶ ମିଶ୍ର ପ୍ରଭୃତିଙ୍କ ଗଦ୍ୟ ରବୀନ୍ଦ୍ରନାଥଙ୍କ ଗଦ୍ୟଶୈଳୀଠାରୁ ସମ୍ପୂର୍ଣ୍ଣ ସ୍ୱତନ୍ତ୍ର । ସବୁଜ ଗୋଷ୍ଠୀର ଶ୍ରେଷ୍ଠ ଗଦ୍ୟଲେଖକମାନେ ମଧ୍ୟ ନିଜର ମୌଳିକତା ସମ୍ପୂର୍ଣ୍ଣ ଅକ୍ଷୁଣ୍ଣ ରଖିଛନ୍ତି । ଉପନ୍ୟାସ ଓ କ୍ଷୁଦ୍ର ଗଳ୍ପରେ ଏହି କଥା କୁହାଯାଇପାରେ । ସବୁଜ ଯୁଗରେ ଯେଉଁସବୁ ଉପନ୍ୟାସ ଲିଖିତ ହୋଇଥିଲା, ତହିଁରେ ରବୀନ୍ଦ୍ରନାଥଙ୍କର କୌଣସି ଚିହ୍ନ ନାହିଁ । 'ମାଟିର ମଣିଷ', 'ବାସନ୍ତୀ', 'ମଲଜହ୍ନ', 'ମନେ ନାହିଁ' ଓ 'ଛ ମାଣ ଆଠ ଗୁଣ୍ଠ' ପ୍ରଭୃତି ଉପନ୍ୟାସକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ଚରିତ୍ରଚିତ୍ରଣ ଅଥବା

ଗଳ୍ପଗୁଡ଼ିକ ଆଦି କ୍ଷେତ୍ରରେ ରବୀନ୍ଦ୍ରନାଥଙ୍କ ସହିତ ସାମଞ୍ଜସ୍ୟ ଏଥିରେ ଦୁର୍ଲଭ ।

ଓଡ଼ିଆ ନାଟକଗୁଡ଼ିକ ମଧ୍ୟ ରବୀନ୍ଦ୍ରନାଥଙ୍କ ପ୍ରଭାବରୁ ନିର୍ମୁକ୍ତ । କେବଳ କେତେକ ଗୀତି ନାଟ୍ୟ ଓ ମନସ୍ତାତ୍ତ୍ୱିକ ନାଟକକୁ ଏହି ଭାବରେ ବିଚାର କରାଯାଇ-ପାରେ । ବୈକୁଣ୍ଠନାଥଙ୍କର "ମୁକ୍ତପଥେ" ଏବଂ ମାୟାଧର ମାନସିଂହଙ୍କର "ପୂଜାରଣୀ", "କୋଣାର୍କ ଜାଗରଣ" ଅଥବା ଶ୍ରୀ ସଚ୍ଚି ରାଉତରାୟଙ୍କ "ପାଥେୟ" ଉଦାହରଣ ସ୍ୱରୂପ ନିଆଯାଇପାରେ ।

ଆହୁରି ଏକ ବିଚିତ୍ର କଥା ଯେ ସ୍ୱାଧୀନତା ପୂର୍ବରୁ ରବୀନ୍ଦ୍ରନାଥଙ୍କର ଖଣ୍ଡିଏ ହେଲେ ପୁସ୍ତକର ଓଡ଼ିଆରେ ସାର୍ଥକ ଅନୁବାଦ ହୋଇ ନ ଥିଲା; ଯଦିବା ତାଙ୍କର କେତେକ କବିତାକୁ କେହି କେହି ଓଡ଼ିଆ ରୂପାନ୍ତର କରି ନିଜ ନାମରେ ଚଳାଇ ନେଇଥିଲେ । ସ୍ୱାଧୀନତା ଆସିବାର ଗୋଟିଏ ଦଶନ୍ଧି ବିତିଯିବା ପରେ ଏବଂ ତାଙ୍କର ଶତବାର୍ଷିକ ଜୟନ୍ତୀ ଉତ୍ସବ ପାଳନ ଉପଲକ୍ଷରେ ହିଁ ରବୀନ୍ଦ୍ର ସାହିତ୍ୟର ଅନୁବାଦ ଓଡ଼ିଆରେ ବିଶେଷ ରୂପେ ଦେଖାଦେଇଛି ।

—-——

( ଶାନ୍ତିନିକେତନରେ ନିଖିଳ ଭାରତ ଲେଖକ-ସମ୍ମିଳନୀରେ ପଠିତ ଇଂରାଜୀ ପ୍ରବନ୍ଧ ଅବଲମ୍ବନରେ )

# ରବୀନ୍ଦ୍ରନାଥ ଓ ପଲ୍ଲୀସାହିତ୍ୟ

## ଡଃ କୁଞ୍ଜବିହାରୀ ଦାଶ

ଅନୁବାଦକ-ବ୍ରହ୍ମାନନ୍ଦ ସିଂହ

ଏହି ବିରାଟ ଅଧିବେଶନରେ ସାହିତ୍ୟର ବହୁ ବିଷୟ ମଧ୍ୟରେ ପଲ୍ଲୀସାହିତ୍ୟକୁ ସ୍ଥାନ ଦେଇଥିବାରୁ ଓ ମୋତେ ଏହି ବିଷୟରେ କହିବାକୁ ଅନୁରୋଧ କରିଥିବାରୁ ମୁଁ ସର୍ବପ୍ରଥମେ ଉଦ୍ୟୋକ୍ତାମାନଙ୍କୁ ଧନ୍ୟବାଦ ଦେଉଅଛି ।

ଗୁରୁଦେବଙ୍କର ଆଶୀର୍ବାଦ ଓ ବିଶ୍ୱଭାରତୀର ପୃଷ୍ଠପୋଷକତାରେ ମୁଁ ଏକଲକ୍ଷ ପଲ୍ଲୀଗୀତ ଓ ଦୁଇଶତ ଲୋକକାହାଣୀ ସଂଗ୍ରହ କରି ପ୍ରକାଶ କରିପାରିଛି ।

କୌଣସି ବଡ଼ କବି, ଭାବୁକ ବା ଶିଳ୍ପୀଙ୍କଠାରେ ଯେଉଁ ଉପାଦାନ ଦୁର୍ଲ୍ଲଭ, ତାହା ସାଧାରଣ ଜନସମାଜ ମୁହଁର ପ୍ରାକୃତିକ ବାଣୀରୁ ସଂଗ୍ରହ କରି ମନୁଷ୍ୟର ଇତିହାସ ରଚନା କରିବା ପଲ୍ଲୀ-ସାହିତ୍ୟବିଦ୍‌ମାନଙ୍କର ଲକ୍ଷ୍ୟ । ପଲ୍ଲୀସଂଗୀତ ଗ୍ରାମ୍ୟ ଭାବଧାରାର ବାହକ । ବିଦଗ୍ଧସାହିତ୍ୟ, କଳା ଓ ପାଣ୍ଡିତ୍ୟଠାରୁ ଏହା ସ୍ୱତନ୍ତ୍ର । ଆମେ ସମାନ୍ତରାଳଭାବରେ ଦୁଇଟି ପରଂପରା ଗତି କରୁଥିବାର ଦେଖୁ । ଏକଦିଗରେ ଲୌକିକ, ଅନ୍ୟ ଦିଗରେ ବିଦଗ୍ଧ ବା କଳାତ୍ମକ । ଏହି ଦୁଇ ଧାରା ମଧ୍ୟରେ ସବୁବେଳେ ନିରବଚ୍ଛିନ୍ନ ସଂବନ୍ଧ ରହିଆସିଛି ଓ ବିନିମୟ ଘଟିଛି । ପ୍ରତ୍ୟେକ ପ୍ରତ୍ୟେକକୁ ପ୍ରଭାବିତ ତଥା ରୂପାନ୍ତରିତ କରିଅଛି । ପ୍ରଖ୍ୟାତନାମା ଲେଖକମାନେ ନିଜ କୃତିରେ ପଲ୍ଲୀର ଭାବଧାରା ସଂଯୋଗ କରିଥାନ୍ତି । ଲୋକଗୀତ ଓ ଲୋକ-କାହାଣୀ ମାଧ୍ୟମରେ ଜନସାଧାରଣ ବିଦଗ୍ଧ ପରଂପରାର ଅଧିକାରୀ ହୁଅନ୍ତି । ଲୋକଗୀତ ଓ କାହାଣୀ ହିଁ ଦେଶର ପଲ୍ଲୀସମାଜ ସହିତ ଆମକୁ ପରିଚିତ କରାଏ । ଏହି ଗ୍ରାମୀଣ ଜନସାଧାରଣ ଅତୀତ ସହିତ ବର୍ତ୍ତମାନର, ଆମ ସହିତ ଆମ ପୂର୍ବପୁରୁଷଙ୍କର ଧର୍ମଧାରଣା ଓ ବିଶ୍ୱାସର ଯୋଗସୂତ୍ର । ତେଣୁ ପଲ୍ଲୀ-ସାହିତ୍ୟର ମହତ୍ତ୍ୱ ଭୁଲିବାର ନୁହେ । ଭାରତୀୟ ସଂସ୍କୃତିର ଶ୍ରେଷ୍ଠ ବାହକ ରବୀନ୍ଦ୍ରନାଥ ଏହାର ଗୁରୁତ୍ୱ ଉପଲବ୍ଧି କରିଥିଲେ । ସେ ଜାଣିଥିଲେ, ଲୋକଗୀତର ସଂଗ୍ରହ ଓ ସଂରକ୍ଷଣ ଆମର ସଂସ୍କୃତିକୁ ସୁଦୃଢ଼ ତଥା ବଳଶାଳୀ କରିପାରିବ । ଜୋନ, ଏଲ, ମିସ୍‌ଙ୍କ ପରି ସେ ଭାବୁ ନ ଥିଲେ ଯେ ପଲ୍ଲୀସାହିତ୍ୟ ଫସିଲ (Fossil) ଭଳି ଅମର । ପଲ୍ଲୀସାହିତ୍ୟର ସଂରକ୍ଷଣ ଲାଗି ସେ ଯଥାସମ୍ଭବ ଉଦ୍ୟମ କରିଥିଲେ ।

ଆଧୁନିକ କାଳରେ ଗ୍ରାମଲୋକେ ଧନକୁ ଧନ ସହସ୍ର ସଭ୍ୟତାଦ୍ୱାରା ପ୍ରଭାବିତ, ସହର ପ୍ରତି ଆକୃଷ୍ଟ ହୋଇ ପଡ଼ୁଛନ୍ତି । ସେମାନେ ନିଜ ସଂସ୍କୃତିକୁ ବଳିଦେଲେ ଅନୁତାପ କରୁ ନାହାନ୍ତି । ପୀଠ-ଗ୍ରାମଗୁଡ଼ିକ ଏବେ ଶିଳ୍ପ ଓ ବ୍ୟବସାୟର କେନ୍ଦ୍ର ହୋଇଉଠୁଛି । ଆଜି ଯେଉଁଠି ଥିଲା କ୍ଷେତ, କାଲି ସେଠି ଗଢ଼ିଉଠୁଛି ବିରାଟ ଶିଳ୍ପାଗାର । ପ୍ରାଚୀନ ଶୃଙ୍ଖଳା ଦ୍ରୁତ ଗତିରେ ବଦଳୁଛି ଓ ନୂତନ ରୀତି ତାହାର ସ୍ଥାନ ଅଧିକାର କରୁଛି । ହଳିଆ-ଗୀତ ମିଲ ଶ୍ରମିକଙ୍କ ମନରେ ଆନନ୍ଦ ଆଣୁ ନାହିଁ । ପଲ୍ଲୀ-ଗୀତର ପୃଷ୍ଠପୋଷକ ନାହାନ୍ତି । ଶିଳ୍ପର ବିକାଶ ସଙ୍ଗେ ସଙ୍ଗେ କ୍ରମଶଃ ଏହା ଲୋପ ପାଉଛି । ରବୀନ୍ଦ୍ରନାଥ ନିଜ ସୃଷ୍ଟିରେ ଅବିରତ ମଗ୍ନ ଥାଇ ମଧ୍ୟ ଲୋକଗୀତ ସଂଗ୍ରହ ଓ ସଂରକ୍ଷଣ ଦିଗରେ ସମୟ ଦେଇ ପାରିଛନ୍ତି; ସବୁବେଳେ ଲୋକ-ସାହିତ୍ୟ ପ୍ରତି ଆଗ୍ରହ ପ୍ରକାଶ କରିଛନ୍ତି । ସେ ବିଶ୍ୱାସ କରୁଥିଲେ, ଲୋକଗୀତ ଓ କାହାଣୀରେ ମାନବସମାଜର ଯୁଗଯୁଗାନ୍ତର ଭାବଧାରା ସଞ୍ଚିତ ହୋଇ ରହିଛି ।

ଲୋକଗୀତର ସୌନ୍ଦର୍ଯ୍ୟ ଓ ଆକର୍ଷଣ ବିପୁଳ; ଏହାର ଛନ୍ଦମାଧୁରୀ ରବୀନ୍ଦ୍ରନାଥଙ୍କୁ ମୁଗ୍ଧ କରିବା ସଙ୍ଗେ ସଙ୍ଗେ ନୂତନ ସଂଗୀତ ଜଗତକୁ ନେଇ ଯାଇଥିଲା । "ବୃଷ୍ଟି ପଡ଼େ ଟାପୁର ଟାପୁର ନଦେ ଏଲୋ ବାନ୍" ତାଙ୍କୁ ଚିରଦିନ ମନ୍ତ୍ରମୁଗ୍ଧ କରିଥିଲା । ସେ ଏହି ପଙ୍କ୍ତି ନିଜ ଲେଖାରେ ଥରକୁ ଥର ବ୍ୟବହାର କରିଛନ୍ତି ।

କେତେ ବଡ଼ କଥା ଭୁଲି ହୋଇଯାଏ, ସାମ୍ରାଜ୍ୟ ଭାଙ୍ଗେ । ଲୋକଗୀତ ଇତିହାସ ନୁହେଁ । ଏଥିରେ ଗଭୀର ଦର୍ଶନ ନାହିଁ, ଏହା କୌଣସି ମହାନ୍ କବିଙ୍କ ସୃଷ୍ଟି ନୁହେ । ଏହାର ଭାବଧାରା ସଂହତିହୀନ, ରୂପ ଅମାର୍ଜିତ, ପଦଯୋଜନା ଅନିପୁଣ ଓ ପଦାବଳୀ ଅର୍ଥହୀନ । ତଥାପି ଏହା ଲୋକସ୍ମୃତିରେ ଅମର; କାରଣ ଏହା ଆନନ୍ଦର ଚିରବହମାନ ଧାରା ! ମାନବହୃଦୟର ସହଜ ସ୍ୱତଃସ୍ଫୂର୍ତ୍ତି ଅନୁଭୂତିରେ ଏହା ରସାଳ, ଲାବଣ୍ୟମୟ, ଛନ୍ଦମୟ । ଏହାର ରୁଚି ସ୍ୱତନ୍ତ୍ର, ସୌରଭ ସ୍ୱତନ୍ତ୍ର । ଏହାର ଭାବଧାରା ଯେଉଁ ରୂପେ ପ୍ରକାଶ ପାଏ, ତାହା ମଧ୍ୟ ଆତ୍ମସଚେତନ ବିଦଗ୍ଧ କବିତାଠାରୁ ସ୍ୱତନ୍ତ୍ର । ଏହା ସୁକଳ୍ପିତ ନୁହେଁ, ସ୍ୱତଃସ୍ଫୂର୍ତ୍ତ ମୌଳିକ ରଚନା । ପ୍ରାକୃତିକ ମାଧୁର୍ଯ୍ୟର ସକଳ ବିଭବ ଏହାର ଅଙ୍ଗୀଭୂତ । ଠିକ୍ ଆଜିପରି ଲୋକଗୀତ ଆମ ପୂର୍ବପୁରୁଷଙ୍କ ହୃଦୟକୁ ରସସିକ୍ତ କରୁଥିଲା । ଏହି ଭାବେ ଏବେ ବି ଏହା ପୂର୍ବପୁରୁଷଙ୍କ ସହିତ ଆମର ଆତ୍ମିକ ବନ୍ଧନ ନିବିଡ଼ତର କରୁଛି । ଲୋକଗୀତ ଓ କାହାଣୀ ଜାତୀୟ ଉତ୍ତରାଧିକାରର ଅଂଶବିଶେଷ । ତାହାର ସଂରକ୍ଷଣ ଲାଗି ଭାବ-ପ୍ରବଣତା ପ୍ରକାଶ ପାଇବା ବିଚିତ୍ର ନୁହେଁ ।

ଲୋକଗୀତର ସ୍ଥାନ ଯାଦୁଘରରେ ନୁହେଁ, ଏହା ସଦା ଗତିଶୀଳ ଓ ପ୍ରାଣପୂର୍ଣ୍ଣ । ଏହା ମନୁଷ୍ୟର ଏକାନ୍ତ ଆପଣାର ଅନୁଭୂତି ଓ ସ୍ୱପ୍ନରେ ଗଢ଼ା ।

ଲୋକଗୀତ ଅଗ୍ରୁର ଅତୀତ ଅବସ୍ମରଣୀୟ । ଅତ ଯତ୍ନ ଓ ଶ୍ରଦ୍ଧାର ସହିତ ପଲ୍ଲୀସାହିତ୍ୟର ସଂରକ୍ଷଣ ହେବା ଏକାନ୍ତ ଆବଶ୍ୟକ ।

ରବୀନ୍ଦ୍ରନାଥ ବୁଝିଥିଲେ, ସାମାଜିକ, ଐତିହାସିକ, ନୃତାତ୍ତ୍ୱିକ ଓ ଭାଷାତାତ୍ତ୍ୱିକ ଆଦି ନାନା ଦୃଷ୍ଟିକୋଣରୁ ସଫଳଭାବେ ଲୋକସାହିତ୍ୟକୁ ଆଲୋଚନା କରାଯାଇ-ପାରେ । କିନ୍ତୁ ସେ ଗବେଷକ ବା ସମାଲୋଚକ ଦୃଷ୍ଟିରେ ପଲ୍ଲୀସାହିତ୍ୟକୁ ଦେଖୁ ନ ଥିଲେ । ବିଶେଷତଃ କୋମଳ ମଧୁର ଶିଶୁସଂଗୀତ ଏ ପ୍ରକାର ବିଶ୍ଳେଷଣ ସହ୍ୟ କରିବା ପାଇଁ ଅସମର୍ଥ । ରବୀନ୍ଦ୍ରନାଥଙ୍କ ମତରେ ଲୋକଗୀତକୁ ସମାଲୋଚନା ଦୃଷ୍ଟିରେ ଦେଖିବାଟା ଗୋଟିଏ ଲଜ୍ଜାବତୀ ଯୁବତୀକୁ ବିଶ୍ୱବିଦ୍ୟାଳୟରେ ସର୍ବସାଧାରଣଙ୍କ ସମ୍ମୁଖରେ ପ୍ରଶ୍ନମାଳାରେ ଜର୍ଜରିତ କରିବା ସଙ୍ଗେ ସମାନ । କବିତାକୋମଳ ରୋମାଣ୍ଟିକ୍ ପ୍ରେମିକ ଦୃଷ୍ଟିରେ ନିଜ ଅନୁଭୂତିଦ୍ୱାରା ରବୀନ୍ଦ୍ରନାଥ ପଲ୍ଲୀସାହିତ୍ୟ ଅଧ୍ୟୟନ କରୁଥିଲେ । ତାହା ସହିତ ରବୀନ୍ଦ୍ରନାଥ ଏହାକୁ ତୁଳନା କରିନାହାନ୍ତି ଅଥବା କୌଣସି ନୂଆ ସିଦ୍ଧାନ୍ତ ବାଢ଼ି ନାହାନ୍ତି । ହୃଦୟର ନିଭୃତତମ ପ୍ରଦେଶରେ ସେ ଏହାକୁ ଭଲ ପାଉଥିଲେ ଓ ଏଥିରୁ ଆନନ୍ଦ ଉପଲବ୍ଧି କରୁଥିଲେ । ତାଙ୍କର ସୃଷ୍ଟି ରସଧାରାରେ ରସାଣିତ ହୋଇ ଲୋକସାହିତ୍ୟ ନୂତନ ରଙ୍ଗ ଓ ଜୀବନ ଲାଭ କରିଛି । ସର୍ବସାଧାରଣଙ୍କର ଦୃଷ୍ଟି ଆକର୍ଷଣ କଲା ପରି ଏହାର ଅନ୍ତର୍ନିହିତ ସୌନ୍ଦର୍ଯ୍ୟ ସେ ଉଦ୍‌ଘାଟନ କରିଛନ୍ତି । ଏ କ୍ଷେତ୍ରରେ ରବୀନ୍ଦ୍ରନାଥ ଅଗ୍ରଦୂତ ।

ପଲ୍ଲୀସାହିତ୍ୟ ଅଧ୍ୟୟନ ତିନୋଟି ଉପାୟରେ କରାଯାଇପାରେ । ପ୍ରଥମତଃ ସମୟ ନିରୂପଣ, ଦ୍ୱିତୀୟତଃ ନୃତାତ୍ତ୍ୱିକ ସାମ୍ୟ ଓ ବୈଷମ୍ୟ ନିର୍ଦ୍ଧାରଣ କରିବା ନିମିତ୍ତ ସମସ୍ତର ତୁଳନାତ୍ମକ ବିଚାର, ସର୍ବଶେଷରେ ଯୁଗର ସାମାଜିକ ଓ ମନସ୍ତାତ୍ତ୍ୱିକ ଅବସ୍ଥା ।

ରବୀନ୍ଦ୍ରନାଥ ପ୍ରଥମ ଓ କେତେକ ପରିମାଣରେ ଶେଷ ପନ୍ଥାଟି ହିଁ ଗ୍ରହଣ କରିଛନ୍ତି । ସେ ଲୋକସାହିତ୍ୟର ସାହିତ୍ୟିକ ମୂଲ୍ୟରେ ଆଗ୍ରହୀ । ତେଣୁ ତାଙ୍କର ରଚନାରେ ଭୌଗୋଳିକ, ଐତିହାସିକ ଓ ନୃତାତ୍ତ୍ୱିକ ଦୃଷ୍ଟିକୋଣର ପ୍ରଶ୍ନ ଉଠେ ନାହିଁ । ଏକ ଗୀତର ବିଭିନ୍ନ ରୂପ ରବୀନ୍ଦ୍ରନାଥ ଲିପିବଦ୍ଧ କରି ରଖୁଥିଲେ । ଏଥିମଧ୍ୟରୁ କେଉଁଟି ମୂଳଗୀତ ଜାଣିବା ସମ୍ଭବ ନୁହେଁ; ତେଣୁ ପ୍ରତ୍ୟେକଟି ଉତ୍ତମରୂପେ ସଂରକ୍ଷିତ ହେବା ଆବଶ୍ୟକ ବୋଲି ସେ ମନେ କରୁଥିଲେ । ରବୀନ୍ଦ୍ରନାଥ ଗୀତଗୁଡ଼ିକର ସଂଗ୍ରହ-ସ୍ଥାନ ଉଲ୍ଲେଖ କରିଥିଲେ ଗବେଷକମାନଙ୍କ ପାଇଁ ବହୁତ ସୁବିଧା ହୋଇଥାନ୍ତା ।

ରବୀନ୍ଦ୍ରନାଥଙ୍କ ସଂଗ୍ରହର ପରିମାଣ ବିପୁଳ ନୁହେଁ; [ଅଧିକ ସଂଗ୍ରହ କରିବାକୁ ତାଙ୍କର ସମୟ ମଧ୍ୟ ନ ଥିଲା । ସେ କେବଳ ଶିଶୁଖେଳଗୀତ ସଂଗ୍ରହ କରିବା ପାଇଁ ପ୍ରୟାସ କରିଥିଲେ । ଏହି ଗୀତଗୁଡ଼ିକ କୋମଳହୃଦୟା ଜନନୀ ଓ ଶିଶୁମାନେ ଚାନ୍ଦାଣିରେ ଖେଳିଲାବେଳେ ବୋଲିଥାନ୍ତି । ଦୋଳିଗୀତ, ଲୋକପ୍ରିୟ ଗାଥାକବିତା,

ନାଉଛାଗୀତ, ଶାଗଡ଼ିଆଗୀତ, କୃଷକଗୀତ ପ୍ରଭୃତି ରବୀନ୍ଦ୍ରନାଥ ସଂଗ୍ରହ କରିନାହାନ୍ତି । ତଥାପି ସୁନିର୍ବାଚିତ ହୋଇଥିବାରୁ ଭାରତୀୟ ଲୋକଗୀତ ମଧ୍ୟରେ ରବୀନ୍ଦ୍ରନାଥଙ୍କ ସଂଗ୍ରହ ଶ୍ରେଷ୍ଠ ।

ହୋଇପାରେ ଗୀତରେ କେତେକ ପଙ୍‌କ୍ତି ନିରର୍ଥକ; ମାତ୍ର ଏଥିରେ ଗ୍ରାମ୍ୟଶିଶୁର କଳ୍ପନା ମୁକ୍ତ ଭାବରେ କ୍ରୀଡ଼ା କରିଅଛି । ନୌକାରେ ବୁଲି, ମାଛ ଧରି, ସାନପୁଅ ଟଙ୍କା ବାନ୍ଧୁଣିବା ପଥକୁ ମାଆର ପ୍ରତୀକ୍ଷା, ପୁଅଝିଅଙ୍କ ବାହାଘର ଲାଗି ମାଆର ସୁଖସ୍ୱପ୍ନ, ଶିଶୁର ନାଚ, ଚୋଠବାନ୍ଧୁଡ଼ା ବାଳକର ଧୂଳିବୋଳା ଦେହ ଦେଖିବାରେ ମାଆର ପୁଲକ—ସବୁ କିଛି ଏହାର ଅନ୍ତର୍ଭୁକ୍ତ । କେଉଁଠି ଗାଈ ନାଁ 'ହାସୀ' ତ ପୁଅ ନାଁ 'ଧୂଳିଆବାବାଜି' । କେଉଁଠି ମାଆ ପୁଅ ପାଇଁ ବଂଶୀ ତିଆରି କରେ, ଅମଣିଆ ଶିଶୁକୁ ମାଆ ଶାସନ କରେ, ଝିଅ ବାହୁନି ବାହୁନି ବାପଘରୁ ବିଦାୟ ନିଏ । ଏହିସବୁ ରସାଳ ଅନୁଭୂତି ଅତି ଅଳ୍ପ କଥାରେ ଅତି ଗମ୍ଭୀର ଭାବେ ପ୍ରକାଶ ପାଇଛି —

"ଆଗେ କାନ୍ଦେ ମା ବାପ୍ ପିଛେ କାନ୍ଦେ ପର ।"
"କେସେର ମାସୀ, କେସେର ପିସୀ, କେସେର ବ୍ରିନ୍ଦାବନ
ଅତୋଦିନେ ଜାନ୍‌ଲାମ ମା ବଡ଼ ଧନ ।"

ଅଥବା

"ଧନକେ ନିସ୍ସେ ବନକେ ଯାବୋ ସେଖାନେ ଖାବୋ କି
ନିରାଲେ ବସିୟା ଚାନ୍ଦେର ମୁଖ୍ ନିରେଖି ।"

ରବୀନ୍ଦ୍ରନାଥ ମୁକ୍ତକଣ୍ଠରେ ସ୍ୱୀକାର କରିଛନ୍ତି ଯେ, ତାଙ୍କର ସଂଗ୍ରହ କେବଳ ବଙ୍ଗ ମଧ୍ୟରେ ସୀମାବଦ୍ଧ ନୁହେ । ତାଙ୍କଦ୍ୱାରା ସଂଗୃହୀତ କେତେକ ସଂଗୀତ ଆଖପାଖ ପ୍ରଦେଶରେ ବିଶେଷତଃ ପଡ଼ୋଶୀ ପ୍ରଦେଶର ସୀମା ଅଞ୍ଚଳରେ ଦେଖିବାକୁ ମିଳେ । ଉପଭାଷାନ୍ତର୍ଗତ କେତେକ ଶବ୍ଦାବଳୀରୁ ଏହା ସ୍ପଷ୍ଟ ଜଣାଯାଏ । ତାଙ୍କର କେତେକ ଗୀତ ମେଦିନୀପୁର ଜିଲ୍ଲାନ୍ତର୍ଗତ କାଣ୍ଠାଇରୁ ସଂଗୃହୀତ । ସେହି ଅଞ୍ଚଳରୁ ମୋ ନିଜର ସଂଗୃହୀତ କବିତାରେ ସାମ୍ୟ ଦେଖାଯାଏ । ଏହି ଅଞ୍ଚଳରେ କଥିତ ଭାଷା ଓଡ଼ିଆର ଏକ ଉପଭାଷା । ଏଠାରେ ଗୋଟିଏ ଉଦାହରଣ ଦେଲେ ଓଡ଼ିଆ ଏବଂ ଓଡ଼ିଆ-ବଙ୍ଗଳା ମିଶ୍ରିତ ଉପଭାଷା ମଧ୍ୟରେ ସାମ୍ୟ ସହଜରେ ଜଣାପଡ଼ିବ ।

ବଙ୍ଗଳା— "ଜାଦୁ ଏତୋ ବଡ଼ୋ ରଙ୍ଗୋ
ଚାର ରଂଗ ଦେଖାତେ ପାରୋ ଜାବୋ ତୋମାର ସଂଗ
ଜବା ରଂଗ, କରବୀ ରଂଗ, ରଂଗ କୁସୁମ ଫୁଲ୍
ତାହାର ଅଧିକ ରଂଗ କନ୍ୟେ ତୋମାର ମଥାର ସିନ୍ଦୁର ।
ଜାଦୁ ଏତୋ ବଡ଼ୋ ରଙ୍ଗୋ, ଏତୋ ବଡ଼ୋ ରଙ୍ଗୋ ।
ଗୁର ଧାଲେ ଦେଖାତେ ପାରେ ଯାବୋ ତୋମାର ସଂଗ

ବାକ୍ ଧାଲେ, ବସ୍ତ୍ର ଧାଲେ, ଧାଲେ ରାଜହଂସ
ତାହାର ଅଧିକ ଧାଲେ କନ୍ୟେ ତୋମାର ହାତେର ଶଙ୍ଖ ।
ଜାଦୁ ଏତୋ ବଡ଼ୋ ରଙ୍ଗୋ, ଏତୋ ବଡ଼ୋ ରଙ୍ଗୋ
ଚାର କାଲେ ଦେଖାତେ ପାରୋ ଜାବୋ ତୋମାର ସଂଗ ।
କାକ କାଲେ, କୋକିଲ୍ କାଲେ, କାଲେ ଫିଙ୍ଗେର ବେଶ
ତାହାର ଅଧିକ କାଲେ କନ୍ୟେ ତୋମାର ମଥାର କେଶ ।"

ଓଡ଼ିଆ— ରଙ୍ଗ ରଙ୍ଗଣୀ ଏ ଦୁହେଁ ରଙ୍ଗ ଲୋ, ରଙ୍ଗ ତ ଫୁଲ୍ ମନ୍ଦାର
ଆହୁରି ଯେବେ ତୁ ରଂଗ ପଚାରିଲୁ, ଚନ୍ଦ୍ରେସ୍ୱାଣୀ ଲୋ !
ତୋହରି ମଥା ସିନ୍ଦୂର ।
ରଙ୍ଗ ଚାରି ଛନ୍ଦ କହିଲୁ ନାଗର, ତୁ ମୋର ଜୀବରଧନ
ଧଳା ଚାରି ଛନ୍ଦ ଯେବେ କହିବୁ ରେ, ଯାଚ ଭୁଞ୍ଜାଇବି ପାନ ।
ଧୋବ ଧୋବଲି ଏ ଦୁହେଁ ଧୋବ ଲୋ, ଧୋବ ତ ବଜାଙ୍କ ହଂସ
ଆହୁରି ଧୋବ ତୁ ଯେବେ ପଚାରିଲୁ ଚନ୍ଦ୍ରେସ୍ୱାଣୀ ଲୋ !
ତୋହରି ପିନ୍ଧିଲା ବାସ ।
ଧୋବ ଚାରି ଛନ୍ଦ କହିଲୁ ନାଗର, ତୁ ମୋର ଜୀବର ଧନ
କଳା ଚାରି ଛନ୍ଦ ଯେବେ କହିବୁ ରେ, ଯାଚ ଦେବି ଯଉବନ ।
କଳା କଳା ଏ ଦୁହେଁ କଳା ଲୋ, କଳା ତ ବଣ ମଇଁଷି
ଆହୁରି ଯେବେ ତୁ କଳା ପଚାରିଲୁ ଚନ୍ଦ୍ରେସ୍ୱାଣୀ ଲୋ,
ତୋହରି ମୁଣ୍ଡର କେଶ ।"

ନାନା ପ୍ରକାର ଭେଦଗତ ସାମ୍ୟ ମଧ୍ୟରେ ଆମେ ଅଳ୍ପ କିଛି ପରିବର୍ତ୍ତନ ଏହି ଦୁଇ କବିତାଂଶରେ ଦେଖିବାକୁ ପାଉଁ । ପ୍ରେମଘଟିତ ମନୋଭାବ ଓଡ଼ିଆ ଗୀତରେ ସୁନ୍ଦରତର ଭାବରେ ପ୍ରକାଶ ପାଇଛି । ଏହା ଗୋଟିଏ ଶିକାରୀ ଓ ତାର ସ୍ତ୍ରୀର କଥୋପକଥନ ମାତ୍ର । ବଙ୍ଗଳା ଗୀତରେ ପୁରୁଷ ସ୍ତ୍ରୀର ରଙ୍ଗବିଷୟକ ସମସ୍ତ ପ୍ରଶ୍ନାବଳୀର ଉତ୍ତର ଠିକ୍ ଭାବେ ଦେଲେ ସ୍ତ୍ରୀ ତାର ଯୌବନ ଅର୍ପଣ କରିବ ବୋଲି ବ୍ୟକ୍ତ କରିଛି । ଓଡ଼ିଆ ଗୀତରେ ସ୍ତ୍ରୀ ପ୍ରଥମେ ନାନା ପ୍ରକାର ଉପହାର ଦେଇଛି ଓ ପରିଶେଷରେ ରଙ୍ଗ ବିଷୟକ ସମସ୍ତ ଉତ୍ତର ଠିକ ଭାବେ ପାଇଲା ପରେ ତାହାର ଯୌବନ ଅର୍ପଣ କରିବାକୁ ସ୍ୱୀକୃତି ଦେଇଛି ।

ରବୀନ୍ଦ୍ରନାଥଙ୍କ ବାଉଲ ସଙ୍ଗୀତପ୍ରୀତି ସର୍ବଜନବିଦିତ । ସେ ନିଜ ଦର୍ଶନର ପୁଷ୍ଟି ଲାଗି ସେମାନଙ୍କ ପାଖରୁ ପ୍ରେରଣା ଲାଭ କରୁଥିଲେ । ତାଙ୍କର କେତେକ ଗୀତ ବାଉଲ ଗୀତ-ଭଙ୍ଗୀରେ ରଚିତ । ପଲ୍ଲୀ-ଗୀତିଛନ୍ଦ ମଧ୍ୟ ତାଙ୍କୁ ବହୁ ପରିମାଣରେ ଅନୁପ୍ରାଣିତ କରିଥିଲା । ଏହି ପୃଷ୍ଠଭୂମିରେ ରବୀନ୍ଦ୍ରନାଥ ମନୋହାରୀ ଶିଶୁଗୀତି ରଚନା କରିଥିଲେ ।

କବି ରବୀନ୍ଦ୍ରନାଥ ଭାରତର ବୃହତ୍ତମ ସହରରେ ଜନ୍ମ ହୋଇଥିଲେ ଓ ବଢ଼ିଥିଲେ; ମାତ୍ର ତାଙ୍କର ପଲ୍ଲୀ ପ୍ରତି ସବୁଠାରୁ ବେଶୀ ଶ୍ରଦ୍ଧା ଥିଲା । ପଲ୍ଲୀସାହିତ୍ୟ ଭାରତୀୟ ଗବେଷକମାନଙ୍କଦ୍ୱାରା ସଂପୂର୍ଣ୍ଣରୂପେ ଅବହେଳିତ ହୋଇ ଲୋକଲୋଚନର ଅଗୋଚରରେ ଥିଲା । ସର୍ବପ୍ରଥମେ ରବୀନ୍ଦ୍ରନାଥ ଏହାର ମହତ୍ତ୍ୱ ଉପଲବ୍ଧି କଲେ, ଏହାକୁ ଯଥାର୍ଥ ମର୍ଯ୍ୟାଦା ଦେଲେ । ଭାରତର କୌଣସି ବିଶ୍ୱବିଦ୍ୟାଳୟ ଏପର୍ଯ୍ୟନ୍ତ ଲୋକସାହିତ୍ୟକୁ ସାଧାରଣ ପାଠ୍ୟକ୍ରମରେ ସ୍ଥାନ ଦେଇ ନାହାନ୍ତି । ପଲ୍ଲୀ ସାହିତ୍ୟ ସଂଗ୍ରାହକମାନେ ଏବେ ମଧ୍ୟ ବହୁ ପ୍ରତିକୂଳ ଅବସ୍ଥାରେ ଗତି କରୁଛନ୍ତି । ସାହିତ୍ୟ ଏକାଡ଼େମୀ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗ୍ରହୀ ନୁହେ । ଏ ଦିଗରେ ରବୀନ୍ଦ୍ରନାଥଙ୍କ ଆଦର୍ଶ ସମସ୍ତଙ୍କୁ ପଥ ଦେଖାଇବା ଉଚିତ ।

ଗୋଟିଏ କଥାରେ କହିଲେ, ରବୀନ୍ଦ୍ରନାଥ ହିଁ ପଲ୍ଲୀଗୀତ ଆବିଷ୍କାର କଲେ । ସେ ଏହାର ଭାବଧାରାକୁ ହୃଦୟଙ୍ଗମ କରି, ନିଜ କୃତିରେ ପୁନର୍ଜୀବିତ କରିଛନ୍ତି । କାରଣ ଏହା ମଧ୍ୟରେ ମନୁଷ୍ୟର ଶ୍ରେଷ୍ଠ ଧର୍ମ ଓ ମାନବହୃଦୟର ସାର୍ବଜନୀନ ଚିନ୍ତନ ଅନୁଭୂତି ପ୍ରକାଶିତ । ଏଥିରେ ଅରୂପ ରୂପାୟିତ ହୋଇଅଛି, ଅବାନ୍ତର ଭେଦସମୂହ ଅର୍ଥାନ୍ୱିତ ହୋଇଅଛି, ଋଣାତ୍ମକ (Negative) ହୋଇଛି ଗୁଣଯୁକ୍ତ (Positive) ଏକ ପ୍ରାଣମୟ ଆନନ୍ଦମୟ ରୂପରେ । ବିଶ୍ୱଜନୀନ ମାନବବାଦୀ ରବୀନ୍ଦ୍ରନାଥ ଯୁଗଯୁଗାନ୍ତ ଧରି ଅବହେଳିତ ଅବଜ୍ଞାତ ମୂକ ଜନତାର ମର୍ମନ୍ତୁଦ ଅନୁଭୂତି ରୂପାୟିତ କରିଛନ୍ତି । *

---

* ୧୯୬୧ ମସିହା ଅଗଷ୍ଟ ୧୦ ତାରିଖରେ ରବୀନ୍ଦ୍ର ଶତବାର୍ଷିକୀ ଉପଲକ୍ଷେ ରବୀନ୍ଦ୍ର ଓ ଭାରତୀୟ ସାହିତ୍ୟ ଅଧିବେଶନରେ ପଠିତ ଲେଖକଙ୍କ ଇଂରାଜୀ ପ୍ରବନ୍ଧର ଅନୁବାଦ ।

# ରବୀନ୍ଦ୍ର ସଙ୍ଗୀତ


## ଅଧ୍ୟାପକ ଦେବୀପ୍ରସନ୍ନ ପଟ୍ଟନାୟକ
## ଓ
## ଶ୍ରୀମତୀ ସୁଲକ୍ଷଣା ପଟ୍ଟନାୟକ


ରବୀନ୍ଦ୍ର ପ୍ରତିଭାର ଏକ ବିଶେଷ ପ୍ରକାଶକ୍ଷେତ୍ର ହେଉଛି ସଙ୍ଗୀତ; କିନ୍ତୁ ନାନା କାରଣରୁ କବିଜୀବନର ଏହି ସାର୍ଥକ ସୃଷ୍ଟି ଭାରତୀୟ ସଙ୍ଗୀତ-ରସିକ ମହଲରୁ ଯେଉଁ ସ୍ୱୀକୃତି ଲାଭ କରିବା କଥା, ତା ପାଇଁ ନାହିଁ । ଅତ୍ୟଧିକ ସମ୍ଭ୍ରମ କିମ୍ବା ଅବଜ୍ଞା ଏ ଉଭୟ କାରଣରୁ ରବୀନ୍ଦ୍ର-ସଙ୍ଗୀତର ରସଗ୍ରହଣ, ବିଚାର ଓ ଉପଯୁକ୍ତ ମୂଲ୍ୟାଙ୍କନରେ ବାଧା ସୃଷ୍ଟି ହୋଇଛି । ରବୀନ୍ଦ୍ର-ସଙ୍ଗୀତର ବିସ୍ତୃତ କ୍ଷେତ୍ର ଜରିପ କରିବାର ଚେଷ୍ଟା ଏ କ୍ଷୁଦ୍ର ପ୍ରବନ୍ଧରେ କରାଯାଇ ନାହିଁ । ଏହି ସଙ୍ଗୀତଧାରାର ପ୍ରକୃତି, ବୈଶିଷ୍ଟ୍ୟ ଓ ବିକାଶଧାରା ସମ୍ବନ୍ଧରେ ସଂକ୍ଷେପରେ କିଞ୍ଚିତ୍ ସୂଚନା ଦିଆଯାଇଛି ।

ରବୀନ୍ଦ୍ର-ସଙ୍ଗୀତ ଗୋଟିଏ ଦୃଷ୍ଟିରୁ ଆଞ୍ଚଳିକ; ପୁଣି ଅନ୍ୟ ଦୃଷ୍ଟିରୁ ସାର୍ବଜନୀନ । ଏହା ଭାରତୀୟ ଦେଶୀ ଓ ମାର୍ଗ ସଙ୍ଗୀତର ଧାରାରେ ପରିପୁଷ୍ଟ । ପୁଣି, ପରୀକ୍ଷାମୂଳକ ଭାବରେ ହେଲେ ମଧ୍ୟ ବିଦେଶୀ ସଙ୍ଗୀତର ପ୍ରଭାବ-ପୁଷ୍ଟ । ଦେଶୀ ସଙ୍ଗୀତ ମଧ୍ୟରେ କୀର୍ତ୍ତନ, ଶ୍ୟାମାସଙ୍ଗୀତ, ବାଉଲ, ଭାଟିଆଲି, ସାରିଗାନ, ବୈରାଗୀଗାନ ଆଦି ବଙ୍ଗଳାର ବିଭିନ୍ନ ଲୋକ-ସଙ୍ଗୀତ ବ୍ୟତୀତ ଯାତ୍ରା, ପାଞ୍ଚାଳୀ ଗୀତ ଆଦିରୁ ମଧ୍ୟ ସୁର ସଂଗ୍ରହ କରି ରବୀନ୍ଦ୍ରନାଥ ନିଜସ୍ୱ ସଙ୍ଗୀତର ଧାରା ସୃଷ୍ଟି କରିଛନ୍ତି । ହିନ୍ଦୀ ଧ୍ରୁପଦ ଗୀତର ଗାମ୍ଭୀର୍ଯ୍ୟ ତାଙ୍କୁ ବିଶେଷ ଭାବରେ ପ୍ରଭାବିତ କରିଥିଲା । ତାଙ୍କର ପ୍ରଥମ ବୟସର ଗୀତ ରଚନା ମଧ୍ୟରେ ହିନ୍ଦୀସୁର ଭାଙ୍ଗି ବଙ୍ଗଳା ଗୀତ ରଚନା କରାଯାଇଥିବା ସହଜେ ଲକ୍ଷ୍ୟ କରାଯାଇପାରେ । 'ପ୍ରଭାତେ ବିମଲାନନ୍ଦେ' ଗୀତଟି କିପରି ହିନ୍ଦୀଗୀତ 'ନାଦ ନଗର ବସାୟେ' ସୁର ଅନୁସାରି ହୋଇଛି, ତାହା ସଙ୍ଗୀତଗାୟକ ଓ ରସିକମାନଙ୍କୁ ଜଣା । 'ବାଜେ କରୁଣସୁରେ' ଗୀତରେ କର୍ଣ୍ଣାଟକୀ ସଙ୍ଗୀତଧାରାର ପ୍ରଭାବ ଯେପରି ସହଜେ ବାରି ହୋଇପଡ଼େ, 'ଏନେଛି ମୋରା ଏନେଛି ମୋରା' (ବାଲ୍ମୀକି ପ୍ରତିଭା), 'ଫୁଲେ ଫୁଲେ ଢଲେ ଢଲେ' (କାଲମୃଗୟା) ଆଦିରେ ବିଲାତୀ ସଙ୍ଗୀତର ସୁର ସେହିପରି ସୁସ୍ପଷ୍ଟ । କୀର୍ତ୍ତନ ଢଙ୍ଗରେ 'ଓହେ ଜୀବନବଲ୍ଲଭ' ଅବିକଳ ବାଉଲ ସୁରରେ 'ଯଦି ତୋର ଡାକ ଶୁନେ କେଉ ନ ଆସେ', ବୈରାଗୀ ଗୀତ ସୁରରେ 'ଭେଙ୍ଗେ ମୋର ଘରେର ଚାବି'; କିମ୍ବା ମାଝୀଗୀତ ସୁରରେ 'ଗ୍ରାମ ଛାଡ଼ା

ଓଇ ରାଙାମାଟିର ପଥ' ଆଦି ଗୀତ ଦେଖିଲେ ରବୀନ୍ଦ୍ର ପ୍ରତିଭାର ବଚିତ୍ର ପ୍ରକାଶ ସମ୍ବନ୍ଧରେ ସମ୍ୟକ ଧାରଣା କରିବା ସମ୍ଭବ ।

ପାରିବାରିକ ପରମ୍ପରା ରବୀନ୍ଦ୍ରନାଥଙ୍କ ସଙ୍ଗୀତଶିକ୍ଷାରେ ପ୍ରଧାନ ସହାୟକ । ଅଭିଜାତ ପରିବାରରେ ଅବ୍ୟାହତ ସଙ୍ଗୀତଚର୍ଚ୍ଚାର ଧାରା ଓ ବିଦ୍ୟୋତ୍ସାହୀ ସ୍ନେହଶୀଳ ପିତାଙ୍କର ଆଶୀର୍ବାଦ ଲାଭ ରବୀନ୍ଦ୍ର ସଙ୍ଗୀତସୃଷ୍ଟିର ପ୍ରଧାନ ଉତ୍ସ । ସତର ବର୍ଷ ବୟସ ପର୍ଯ୍ୟନ୍ତ ରବୀନ୍ଦ୍ରନାଥଙ୍କ ଜୀବନକୁ ଗୀତଶିକ୍ଷାର ବୟସ ରୂପେ ଗ୍ରହଣ କରା-ଯାଇପାରେ । ପାରିବାରିକ ଆସରର ନୀରବ ଶ୍ରୋତା ରବୀନ୍ଦ୍ରନାଥ ଏହି ବୟସରେ ହିନ୍ଦୀରାଗରେ ବଙ୍ଗଳା ଗୀତ ରଚନା କରିବା ଆରମ୍ଭ କରି ଦେଇଥିଲେ । ତାଙ୍କର ୩୫ ବର୍ଷ ବୟସ ପର୍ଯ୍ୟନ୍ତ ଏହି ହିନ୍ଦୀଭଙ୍ଗା ବଙ୍ଗଳା ଗୀତ ରଚନା ଅବ୍ୟାହତ ଗତିରେ ଚାଲିଥିବା ଦେଖାଯାଏ । ୨୯ ବର୍ଷ ବୟସରୁ ଆରମ୍ଭ କରି ନିଜ ଜମିଦାରୀ ପରିଚାଳନା କାର୍ଯ୍ୟରେ ବ୍ୟାପୃତ ଥିଲାବେଳେ ସେ ସାଧାରଣ ଲୋକଜୀବନର ସଂସ୍ପର୍ଶରେ ଆସିଥିଲେ । ସମୃଦ୍ଧ ଲୋକସାହିତ୍ୟ ଓ ସଙ୍ଗୀତର ଗୁଣମୁଗ୍ଧ ରବୀନ୍ଦ୍ରନାଥ ତାଙ୍କର ସୃଷ୍ଟି ମଧ୍ୟରେ ଏହି ପ୍ରଭାବର ସ୍ପଷ୍ଟ ଛାପ ରଖି ଯାଇଛନ୍ତି । ତାଙ୍କର ୩୯ ବର୍ଷ ବୟସର ପରବର୍ତ୍ତୀ କାଳର ରଚନାରେ ଲୋକସଙ୍ଗୀତର ପ୍ରଭାବ ବିଶେଷ ଭାବେ ଲକ୍ଷ୍ୟ । ରବୀନ୍ଦ୍ରନାଥ ୧୭ ବର୍ଷ ବୟସରେ ପ୍ରଥମେ ବିଲାତ ଯାଇଥିଲେ । ସେହି ସମୟରେ ବିଲାତି କଣ୍ଠ ସଙ୍ଗୀତଚର୍ଚ୍ଚାର ଯେଉଁ ଅପୂର୍ବ ସୁଯୋଗ ସେ ଲାଭ କରିଥିଲେ, ପରବର୍ତ୍ତୀ ସଙ୍ଗୀତସୃଷ୍ଟିରେ ତାହାର ପୂର୍ଣ୍ଣ ସଦୁପଯୋଗ କରିଛନ୍ତି । ୨୧ ବର୍ଷ ବୟସରେ ଅର୍ଥାତ୍ ୧୮୮୧ରେ ରଚିତ କାଳମୃଗୟା ଗୀତରେ ବିଲାତି ଗୀତର ପ୍ରଭାବ ଥିବା କଥା ପୂର୍ବେ ସୂଚନାରେ କୁହାଯାଇଛି । ଗୀତକଥାର ଭାବ ସଙ୍ଗେ ମିଳାଇ ବିଭିନ୍ନ ରାଗ ରାଗିଣୀର ସାର୍ଥକ ରୂପାୟନ, ଉଦ୍ଦୀପନା ଗୀତ, ସ୍ୱଦେଶୀ ସଙ୍ଗୀତ, ମାତୃପ୍ରେମ, ଦେଶପ୍ରେମମୂଳକ ଗୀତସୁରର ଭାବ ରୂପ ସେ ବିଲାତି ସଙ୍ଗୀତ ଓ ୟୁରୋପୀୟ ଜାତୀୟ ସଙ୍ଗୀତ ମଧ୍ୟରୁ ପାଇଥିଲେ । ବିଲାତି ସଙ୍ଗୀତର ଦୈନନ୍ଦିନ ଜୀବନର ସୁଖଦୁଃଖ ରାଗଦ୍ୱେଷପୂର୍ଣ୍ଣ କ୍ଷଣିକ ରସ ଦେଶୀ ସଙ୍ଗୀତ ମଧ୍ୟରେ ଚଳାଇବାର ଯେଉଁ ପରୀକ୍ଷା ରବୀନ୍ଦ୍ରନାଥ କରିଥିଲେ, ତାହା ତାଙ୍କର ଶିକ୍ଷାନବିସ କାଳର ରଚନାରେ ଦେଖିବାକୁ ମିଳେ । ପରବର୍ତ୍ତୀ କାଳରେ ଭାରତୀୟ ସଙ୍ଗୀତ ମଧ୍ୟରେ ଚିରନ୍ତନ ରସର ସନ୍ଧାନ ପାଇଲା ପରେ ସେ ସମ୍ପୂର୍ଣ୍ଣରୂପେ ଏହି ପ୍ରାଚ୍ୟ ଆଧାର ଉପରେ ଆପଣାର ସଙ୍ଗୀତ-ଶାଳା ରଚନା କରିଛନ୍ତି ।

ରବୀନ୍ଦ୍ର ସଙ୍ଗୀତର ଭାବବୈଚିତ୍ର୍ୟ ଓ ବିଷୟବୈଚିତ୍ର୍ୟ ଭାରତୀୟ କୌଣସି ସଙ୍ଗୀତ ରଚୟିତାଙ୍କ ମଧ୍ୟରେ ଦେଖିବାକୁ ମିଳେ ନାହିଁ । କାବ୍ୟ-ଗୀତ ହିସାବରେ ରବୀନ୍ଦ୍ର-ସଙ୍ଗୀତରେ ଗୋଟିଏ ସ୍ୱତନ୍ତ୍ର ମୂଲ୍ୟ ରହିଛି । ଗୀତ ଓ କଥା, ସୁର ଓ ବାଣୀ ଅଥବା ବିଶୁଦ୍ଧ କାବ୍ୟ ଓ ବିଶୁଦ୍ଧ ସଙ୍ଗୀତର ସାର୍ଥକ ସମନ୍ୱୟରେ ରବୀନ୍ଦ୍ର-ସଙ୍ଗୀତ ଏକ ଅପରୂପ ସୃଷ୍ଟି । ବିଶୁଦ୍ଧ ସଙ୍ଗୀତର ସୁରସର୍ବସ୍ୱତା ମଧ୍ୟରେ ବାଣୀର ମହିମା ଖର୍ବ ।

ରବୀନ୍ଦ୍ର-ସଙ୍ଗୀତରେ ବାଣୀବ୍ୟତିରେକ ସୁରର ବିଶ୍ଳେଷଣ ଯେପରି ଅବାନ୍ତର, ସୁରବର୍ଜିତ ବାଣୀର ବିଶ୍ଳେଷଣ ସେହିପରି ଅପ୍ରାସଙ୍ଗିକ। ଯେଉଁ ପଣ୍ଡିତମାନେ ରବୀନ୍ଦ୍ରସଙ୍ଗୀତର ସୁରକୁ ଗୌଣ ମନେକରି କେବଳ ବାଣୀର ମହିମା କୀର୍ତ୍ତନ କରନ୍ତି, ସେମାନଙ୍କୁ ରବୀନ୍ଦ୍ରନାଥ ନିଜେ ଉତ୍ତର ଦେଇଛନ୍ତି "ସୁରକେ ବାଦ ଦିୟେ ବାଣୀର ବିଶ୍ଳେଷଣ ଗଣେଶ କେ ବାଦ ଦିୟେ ତାର ବାହନ ମୂଷିକଟାକେ ଧରିୟେ ରାଖା।"

ପୂଜା, ପ୍ରେମ, ପ୍ରକୃତି, ସ୍ୱଦେଶ, ବିଚିତ୍ରା ଓ ଆନୁଷ୍ଠାନିକ ଭେଦରେ ଛଅ ଭାଗରେ ବିଭକ୍ତ ରବୀନ୍ଦ୍ର-ସଙ୍ଗୀତ ଅପରୂପ ଭାବବୈଚିତ୍ର୍ୟଶାଳୀ। ପୂଜା ପର୍ଯ୍ୟାୟର ଗୀତଗୁଡ଼ିକ ମଧ୍ୟରେ ଆଧ୍ୟାତ୍ମିକ ସଙ୍ଗୀତ ବା ଭକ୍ତିମୂଳକ ବ୍ରହ୍ମସଙ୍ଗୀତ ଗର୍ଭିତ। ଆନୁଷ୍ଠାନିକ ପର୍ଯ୍ୟାୟରେ ଶୋକାନୁଷ୍ଠାନ, ଉତ୍ସବ ଓ ଉଦ୍‌ବୋଧନ ଉପଲକ୍ଷେ ଲିଖିତ ଅସଂଖ୍ୟ ସଙ୍ଗୀତକୁ ବିଚାର କରାଯାଇପାରେ। ରବୀନ୍ଦ୍ର-ସଙ୍ଗୀତ କେବଳ ସାଧାରଣ ଗେୟ ସଙ୍ଗୀତ ହିସାବରେ ସ୍ୱୟଂ ସମ୍ପୂର୍ଣ୍ଣ ନୁହେଁ। ରବୀନ୍ଦ୍ରନାଥଙ୍କ ନାଟକରେ ବହୁ ସଙ୍ଗୀତ ମୂଲ୍ୟବାନ ଭୂମିକା ଗ୍ରହଣ କରିଛି। ରବୀନ୍ଦ୍ରଙ୍କର ଅଧିକାଂଶ ନାଟକ ସଙ୍ଗୀତମୟ; ବହୁ ନାଟକ ସଙ୍ଗୀତନିର୍ଭର। ଫାଲଗୁନୀରେ କବି ସ୍ୱୟଂ କହିଛନ୍ତି, "ଏକ ଏକଟି ଗାନେର ଗୃବ ଦିୟେ ନାଟକେର ଅଙ୍କେର ଦର୍ଜା ଖୋଲା ହବେ।" ରବୀନ୍ଦ୍ରନାଥଙ୍କ ଅବ୍ୟବହିତ ପୂର୍ବରୁ ସମାଜରେ ସଙ୍ଗୀତ ଯେପରି ଅବହେଳିତ ଓ ଅଶ୍ରଦ୍ଧାର ପାତ୍ର ଥିଲା, ତହିଁରୁ ଉଦ୍ଧାର କରି କବି ଗୀତକୁ ଜୀବନର ସଙ୍ଗୀ ରୂପେ ପ୍ରତିଷ୍ଠିତ କରିଛନ୍ତି। କେବଳ ଅନୁଷ୍ଠାନ ବା ଜଲସାର ଅଙ୍ଗ ହିସାବରେ ନୁହେଁ, କର୍ମ ଓ ଆନନ୍ଦ ଦାନର ପ୍ରେରଣା ଓ ପାଥେୟ, ଦୁଃଖ ଓ ଶୋକ ମଧ୍ୟରେ ସାନ୍ତ୍ୱନାର ଗମ୍ଭୀର ବାଣୀ ବହନ କରି ରବୀନ୍ଦ୍ର-ସଙ୍ଗୀତ ସୁଖ-ଦୁଃଖ-କର୍ମ ଓ ବିଶ୍ରାମମୟ ସାଧାରଣ ସାମାଜିକ ଓ ପାରିବାରିକ ଜୀବନର ଏକ ସ୍ୱାଭାବିକ ଅଙ୍ଗ ରୂପେ ଆଜି ସୁପ୍ରତିଷ୍ଠିତ। ରବୀନ୍ଦ୍ର "ଗାନେର ଭିତର ଦିୟେ ଭୁବନ ଖାନିକେ" ଦେଖି ଦେଖାଇବାର ଯେଉଁ ପ୍ରଚେଷ୍ଟା କରିଛନ୍ତି, ତାହା ଯେ ନାନା ଦିଗରୁ ନାନା ଭାବରେ ଆମ ଜୀବନକୁ ସମୃଦ୍ଧ କରିଛି, ଏ କଥା ବିସ୍ତାରିତ କରି କହିବା ବାହୁଲ୍ୟ ମାତ୍ର।

ରବୀନ୍ଦ୍ର-ସଙ୍ଗୀତ ବିଭିନ୍ନ ସଙ୍ଗୀତଧାରା ଓ ପରମ୍ପରାପୁଷ୍ଟ ହୋଇଥିଲେ ସୁଦ୍ଧା ଏହାର ସୁରବିନ୍ୟାସରେ ସ୍ୱାତନ୍ତ୍ର୍ୟ ସୁସ୍ପଷ୍ଟ। ରବୀନ୍ଦ୍ର-ସଙ୍ଗୀତ ଉପରେ ଧ୍ରୁପଦ ଗୀତର ପ୍ରଭାବ ବାରିହୋଇ ଦିଶେ। ହିନ୍ଦୀ ଗୀତ ବା ଲୋକଗୀତ ପରି ଦୁଇ ପଦରେ ସୁର ନ ଦେଇ ରବୀନ୍ଦ୍ରନାଥ ଧ୍ରୁପଦ ଆଦର୍ଶରେ ନିଜ ଗୀତଗୁଡ଼ିକୁ ଚାରି ପଦରେ ବିଭକ୍ତ କରିଛନ୍ତି। ପୁଣି ଖେୟାଲ, ଠୁଂରି, ଲୋକସଙ୍ଗୀତର ସ୍ଥାୟୀ ଅନ୍ତରା ପରେ ଆଉ କୌଣସି ସୁର ନ ଥାଇ ଯେପରି ପରବର୍ତ୍ତୀ ପଦଗୁଡ଼ିକରେ କେବଳ ଅନ୍ତରାର ପୁନରାବୃତ୍ତି ହୋଇଥାଏ, ରବୀନ୍ଦ୍ରନାଥ ତାହାର ପରିବର୍ତ୍ତନ କରି ସଂଚାରୀରେ ନୂଆ ସୁର ଯୋଜନା କରିଛନ୍ତି। ଆଭୋଗର ସୁରଟି ଅନ୍ତରାର ଅନୁକରଣରେ ତିଆରି

କରିଥିଲେ ମଧ୍ୟ ଧ୍ରୁପଦ ପରି ମୂଳ ରାଗିଣୀ ବା ସୁର ସଙ୍ଗେ ସାମଞ୍ଜସ୍ୟ ରଖି ସେ ସୁର ଯୋଜନା କରିବାର ଚେଷ୍ଟା କରିଛନ୍ତି ।

ଭାବ ଅନୁରୂପ ସୁର-ଯୋଜନା ରବୀନ୍ଦ୍ର-ସଙ୍ଗୀତର ଅନ୍ୟ ଏକ ବୈଶିଷ୍ଟ୍ୟ । ଗୋଟିଏ ଉଦ୍ଦୀପନା ଗୀତକୁ ନରମ କରି ଗାଇଲେ ତହିଁରେ ରବୀନ୍ଦ୍ର-ସଙ୍ଗୀତର ଢଙ୍ଗ ବା ଗୀତର ପ୍ରକୃତ ରୂପ ପ୍ରକାଶ ପାଏ ନାହିଁ । ଉଦାହରଣ ସ୍ୱରୂପ 'ଓଇ ମହାମାନବ ଆସେ' ଗୀତଟିକୁ ବିଭିନ୍ନ ଢଙ୍ଗରେ ଗାଇଲେ ରବୀନ୍ଦ୍ର-ସଙ୍ଗୀତର ନିଜସ୍ୱ ଢଙ୍ଗ ସହଜେ ଧରାପଡ଼ିବ । ରବୀନ୍ଦ୍ର-ସଙ୍ଗୀତରେ କଥା, ସୁର ଓ ତାଳର ଯେଉଁ ସୁବିନ୍ୟସ୍ତ ଯୋଜନା ହୋଇଛି, ତାହା ପ୍ରତି ସମ୍ପୂର୍ଣ୍ଣରୂପେ ଅବହିତ ନ ରହିଲେ ଏହି ସଙ୍ଗୀତର ପ୍ରକୃତ ରସ ଗ୍ରହଣ କରିବା ଅସମ୍ଭବ । ପାଶ୍ଚାତ୍ୟ ସଙ୍ଗୀତ ନକଲରେ କେତେକ ରବୀନ୍ଦ୍ରସଙ୍ଗୀତ ରଚିତ ହୋଇଥିବା କଥା ପୂର୍ବେ କୁହାଯାଇଛି । ସୁରକାର ଓ ଗୀତ-ରଚୟିତା ହିସାବରେ ରବୀନ୍ଦ୍ରନାଥଙ୍କର ଯେଉଁ ସାଧାରଣ କୃତିତ୍ୱ ଓ ଗୌରବ ଅନ୍ୟତ୍ର ଦେଖିବାକୁ ମିଳେ, ଏହି ପାଶ୍ଚାତ୍ୟ ସଙ୍ଗୀତ ନକଲରେ ରଚିତ ଗୀତଗୁଡ଼ିକରେ ତାହା ବହୁ ପରିମାଣରେ ଖର୍ବ ହୋଇଛି ।

ପଦାବଳୀ କୀର୍ତ୍ତନର ଭିତ୍ତିରେ 'ଭାନୁସିଂହ ପଦାବଳୀ' ଲିଖିତ ହୋଇଥିବାରୁ ଅନେକେ ମନେକରନ୍ତି ଯେ ରବୀନ୍ଦ୍ରସଙ୍ଗୀତ ଉପରେ ପଦାବଳୀ କୀର୍ତ୍ତନର ବହୁଳ ପ୍ରଭାବ ରହିଛି । କିନ୍ତୁ ପ୍ରକୃତ ପକ୍ଷରେ ରବୀନ୍ଦ୍ରସଙ୍ଗୀତରେ ପଦାବଳୀ କୀର୍ତ୍ତନ ପରି ଶକ୍ତ ତାଳର ଗୀତ ନାହିଁ କିମ୍ବା କୀର୍ତ୍ତନ ସୁର ଢଙ୍ଗର ଗୀତ ବେଶୀ ନାହିଁ । କୀର୍ତ୍ତନ ଗାୟକମାନେ ନିଜର ରସଜ୍ଞାନର ଗଭୀରତା ଓ ସୁରତାଳଜ୍ଞାନର କ୍ଷମତା ପ୍ରକାଶ କରିବା ପାଇଁ ଯେଉଁ 'ଆଖର'ର ସୃଷ୍ଟି କରିଛନ୍ତି, ରବୀନ୍ଦ୍ରସଙ୍ଗୀତରେ ତାହା ନାହିଁ କହିଲେ ଚଳେ । 'ଓହେ ଜୀବନବଲ୍ଲଭ' ଗୀତରେ ଆଖର ଅଛି । ସମ୍ପୂର୍ଣ୍ଣ ପଦାବଳୀ ଢଙ୍ଗରେ ଏଇ ଗୋଟିକ ମାତ୍ର ପରୀକ୍ଷାମୂଳକ ଗୀତ । ପଦାବଳୀର କଥାବସ୍ତୁ ଓ ବାଣୀଭଙ୍ଗୀରେ ଲଳିତ୍ୟ ରବୀନ୍ଦ୍ରନାଥଙ୍କୁ ଯେତେ ପରିମାଣରେ ପ୍ରଭାବିତ କରିଛି, ସୁର ତା ତୁଳନାରେ ଖୁବ ଅଳ୍ପ ପ୍ରଭାବିତ କରିଛି । କେବଳ ପରୀକ୍ଷାମୂଳକ ଭାବରେ ଏହି ଧରଣର ଯେଉଁ ଅଳ୍ପ କେତୋଟି ଗୀତ ରବୀନ୍ଦ୍ରନାଥ ଲେଖିଥିଲେ, ତହିଁ ମଧ୍ୟରେ ପୂର୍ବୋକ୍ତ 'ଓହେ ଜୀବନବଲ୍ଲଭ' ଓ 'ପ୍ରଭୁ ଆଜି ତୋମାର' ଆଦି ଗୀତର ନାମୋଲ୍ଲେଖ କରାଯାଇପାରେ ।

ରବୀନ୍ଦ୍ର ସଙ୍ଗୀତରେ ଟପ୍ପାର ପ୍ରଭାବ ଦେଖିବାକୁ ମିଳେ । 'କାଳ-ମୃଗୟା'ରେ ଦୁଇ ତିନୋଟି ଗୀତ ଏଇ ଟପ୍ପା ଧରଣର ଗୀତ । ପ୍ରାଚୀନ ବଙ୍ଗଳାରେ ଯାତ୍ରା ଥିଏଟରର ଗୀତ ଓ ଖାମ୍ବାଜ ରାଗର ଗୀତ ଅତ୍ୟନ୍ତ ଲୋକପ୍ରିୟ ଥିଲା । 'ଦେରେତେ ଭ୍ରମର ଏଲୋ ଗୁନ ଗୁନସ୍ୱେ' ପରି ସୁରର ଗୀତର ଏକ ସମୟରେ ବଙ୍ଗଳା ଦେଶରେ ବହୁଳ ଚଳଣି ଥିଲା । ରବୀନ୍ଦ୍ର ସଙ୍ଗୀତ ମଧ୍ୟରେ ବହୁ ଖାମ୍ବାଜ ସୁରର ଗୀତ ଓ ଯାତ୍ରା ଢଙ୍ଗର ଗୀତ ଅଛି । ବଙ୍ଗଳାର ବୈରାଗୀ ଗାନର ପରୀକ୍ଷା 'ଭେଙ୍ଗେ ମୋର

ଘରେର ଗୃହ' ଗୀତରେ ଓ ମାଝି ଗୀତର ପ୍ରଭାବ 'ଗ୍ରାମ ଛଡ଼ା ଓଇ ରାଙ୍ଗା ମାଟିର ପଥ' ଗୀତରେ ଲକ୍ଷିତ ହୋଇଛି । ବାଉଲ ଢଙ୍ଗର ବହୁ ଗୀତ ରବୀନ୍ଦ୍ରସଙ୍ଗୀତ ମଧ୍ୟରେ ଦେଖିବାକୁ ମିଳେ । 'ପ୍ରାଣେର ମାନୁଷ', 'ମନ ଯଖନ ଜାଗଲେ ନାରେ' କିମ୍ବା 'ଆଜ ଧାନେର ଖେତେ' ଆଦିକୁ ବାଉଲ ଢଙ୍ଗ ଗୀତର ଉଦାହରଣ ରୂପେ ସ୍ୱୀକାର କରାଯାଇପାରେ । ରବୀନ୍ଦ୍ରନାଥ ବାଉଲ ଗୀତକୁ ମଧ୍ୟ ଧ୍ରୁପଦ ଢଙ୍ଗରେ ଗ୍ରହଣ କରି ଲୋକଗୀତର ଢଙ୍ଗ ଠିକ ରଖି ସେଗୁଡ଼ିକର ସୁରବିନ୍ୟାସରେ ପରୀକ୍ଷା ନିରୀକ୍ଷା ମଧ୍ୟରେ ଆପଣାର ସଙ୍ଗୀତକୁଶଳତାର ପରିଚୟ ଦେଇଛନ୍ତି ।

ତାଳ ପ୍ରୟୋଗରେ ମଧ୍ୟ ରବୀନ୍ଦ୍ରନାଥଙ୍କର ସ୍ୱାତନ୍ତ୍ର୍ୟ ଦେଖିବାର ଅଛି । ଏକାଦଶୀ, ନବପଞ୍ଚକ, ନବତାଳ, ଷଷ୍ଠୀ, ରୂପକଡ଼ା, ଝମ୍ପକ ଓ ଅର୍ଦ୍ଧଝମ୍ପକ ଆଦି ଅପ୍ରଚଳିତ ତାଳର ପ୍ରୟୋଗ କରି ସେ ବହୁ ଭାବରେ ଆପଣାର ସୃଷ୍ଟିକୁ ସମୃଦ୍ଧ କରିଛନ୍ତି । ରବୀନ୍ଦ୍ର-ସଙ୍ଗୀତରେ ତାନ ପ୍ରୟୋଗ ଆଜି ବି ଏକ ବିବଦମାନ ବିଷୟ ହୋଇ ରହିଛି । ରବୀନ୍ଦ୍ରନାଥ ନିଜେ ଶ୍ରେଷ୍ଠ ଶ୍ରେଷ୍ଠ ତାନ ଦେଇ ଅନେକ ଗୀତର ସ୍ୱର ଦେଇଛନ୍ତି । ଅଳଙ୍କାର ବୋଝ ନ ହୋଇ ସୌନ୍ଦର୍ଯ୍ୟବର୍ଦ୍ଧକ ହିସାବରେ ଯେତିକି ଆବଶ୍ୟକ ସେତିକି ଅଳଙ୍କାର ପ୍ରୟୋଗ ସଙ୍ଗତ । ଏହି ଦୃଷ୍ଟିରୁ କଥା ଓ ସୁରର ଗୌରବ ଖର୍ବ ନ କରି ଯେତିକି ତାନ ପ୍ରୟୋଗ ସମ୍ଭବ, ସେତିକି ହିଁ ରବୀନ୍ଦ୍ର-ସଙ୍ଗୀତରେ ଦିଆ-ଯାଇପାରେ । ସାମ୍ପ୍ରତିକ କାଳର କେତେକ ସଙ୍ଗୀତଗାୟକ ସମ୍ପୂର୍ଣ୍ଣ ସ୍ୱଚ୍ଛନ୍ଦ ଢଙ୍ଗରେ ରବୀନ୍ଦ୍ରସଙ୍ଗୀତ ଗାଇବା ପାଇଁ ଯେଉଁ ଚେଷ୍ଟା ଚଳାଇଛନ୍ତି, ସେ ସମ୍ବନ୍ଧରେ ମତାନୈକ୍ୟ ନିରସନ ହେବାର କୌଣସି ସୂଚନା ଦେଖାଯାଉ ନାହିଁ ।

ଛନ୍ଦବେଗ ସହିତ ମଣିଷ ମନର ଉତ୍‌ଥାନ ପତନର ଯେଉଁ ପାରସ୍ପରିକ ସମ୍ବନ୍ଧ ଅଛି, ସେଇ ଯୋଗସୂତ୍ର ସମ୍ବନ୍ଧରେ ଗଭୀର ଅଭିଜ୍ଞତା ନ ଥିଲେ ଗୀତସୃଷ୍ଟି ସାର୍ଥକ ହୁଏ ନାହିଁ । ରବୀନ୍ଦ୍ରନାଥଙ୍କର ନିପୁଣ ଶିଳ୍ପୀପ୍ରତିଭା ଏଇ ଛନ୍ଦତତ୍ତ୍ୱ ସମ୍ପର୍କରେ ସଚେତନ ଥିବାରୁ ସେ ତାଙ୍କର ଗୀତନାଟ୍ୟ ଓ ନୃତ୍ୟନାଟ୍ୟମାନଙ୍କରେ ଭାବାନୁସାରୀ ଛନ୍ଦ ପ୍ରୟୋଗରେ ଆପଣା ପ୍ରତିଭାର ସ୍ୱାକ୍ଷର ଆଙ୍କିଯାଇଛନ୍ତି । ରବୀନ୍ଦ୍ରନାଥ ନିଜେ କହିଛନ୍ତି, ସମସ୍ତଙ୍କ ହୃଦୟରେ ଭାବ ଅଛି; କିନ୍ତୁ ତାକୁ ପରି ମାଜି ଫୁଟାଇବାର ଶକ୍ତି ସମସ୍ତଙ୍କର ନାହିଁ । କବିଗୁରୁ ରାଗରାଗିଣୀ ଓ କଥାର ଅପୂର୍ବ ସମନ୍ୱୟରେ ଯେପରି ଅନୁଭୂତିର ପ୍ରକାଶ କରିଛନ୍ତି, ତହିଁରେ ନୂତନତ୍ୱ ଅଛି । 'ସକାଳ ବେଳାର ଆଲୋୟ ବାଜେ ବିଦାୟ ବ୍ୟଥାର ଭୈରବୀ'ର କଥା ଓ ଛନ୍ଦରେ ଯେଉଁ ଗୀତ୍ୟାତ୍ମକତାର ଝଙ୍କାର ଅଛି କିମ୍ବା 'ସାର୍ଥକ ଜନମ ଆମାର' ଗୀତଟିରେ ରାଗ ଓ ସୁରର ଯେଉଁ ଶୋଭନ ସମନ୍ୱୟ ଘଟିଛି, ତାହା ଅନନ୍ୟସାଧାରଣ ।

ରବୀନ୍ଦ୍ରନାଥଙ୍କ ଗୀତକବିତା ମଧ୍ୟରେ ଅନୁଭୂତିର ଗଭୀରତା, ଅବୟବର ସ୍ୱଳ୍ପତା, ସଙ୍ଗୀତମାଧୁର୍ଯ୍ୟ ଓ ଗତିସ୍ୱାଚ୍ଛନ୍ଦ୍ୟ ସହିତ କଥା ଓ ସୁରର ସୁସଙ୍ଗତ ବିନ୍ୟାସ ଲକ୍ଷ୍ୟ । ଭାବକଳ୍ପନାର ବିଚିତ୍ରତା ଓ ସଙ୍ଗୀତ ସହିତ ସୁରପ୍ରାଧାନ୍ୟ ଏଗୁଡ଼ିକର କାବ୍ୟ

ଓ ସଙ୍ଗୀତ ମୂଲ୍ୟକୁ ବହୁ ପରିମାଣରେ ବଢ଼ାଇ ଦେଇଛି । ରବୀନ୍ଦ୍ରନାଥଙ୍କ ସାଧନା ଅସୀମ, ସିଦ୍ଧି ଅପରିସୀମ । ତାଙ୍କର ବିଶାଳ ସୃଷ୍ଟି ବୈଚିତ୍ର୍ୟମୟ । ଅଢ଼େଇ ହଜାରରୁ ଊର୍ଦ୍ଧ୍ୱ ରବୀନ୍ଦ୍ର ସଙ୍ଗୀତ ମଧ୍ୟରେ ଭାବବୈଚିତ୍ର୍ୟ, ସୁରବୈଚିତ୍ର୍ୟ ଓ ବାଣୀଶିଳ୍ପର କୋଣାର୍କ ରଚନାର ଯେଉଁ ତ୍ରିବେଣୀ ସଙ୍ଗମ ଘଟିଛି, ତାହା କେବଳ ଭାରତ କାହିଁକି, ସମଗ୍ର ପୃଥିବୀର ସଙ୍ଗୀତରଚୟିତାମାନଙ୍କ ମଧ୍ୟରେ ଏବେ ମଧ୍ୟ ଅନତିକ୍ରମ୍ୟ ହୋଇ ରହିଛି ।

---

# ରବୀନ୍ଦ୍ର ଚିତ୍ରକଳାର ଗୋଟିଏ ଦିଗ

## ଶ୍ରୀ ସୌମ୍ୟେନ୍ଦ୍ରନାଥ ବନ୍ଦୋପାଧ୍ୟାୟ

### ଅନୁବାଦ—ଶ୍ରୀ ବ୍ରହ୍ମାନନ୍ଦ ସିଂହ

—୧—

"ମୋ ଭିତରେ ଯେତେଗୁଡ଼ିଏ ସୃଷ୍ଟିଧର୍ମୀ ଉଦ୍ୟମ ରହିଛି, ପ୍ରତ୍ୟେକଟିକୁ ମୁଁ ସ୍ୱୀକାର କରିବାକୁ ବାଧ୍ୟ ।"

ପ୍ରବୀଣ ପ୍ରତିଷ୍ଠିତ କବି ଜୀବନର ଶେଷ ଅଧ୍ୟାୟରେ ହଠାତ୍ ଚିତ୍ର-ରାଜ୍ୟରେ ପ୍ରବେଶ କଲେ କାହିଁକି ?—ଏଇ ପ୍ରଶ୍ନର ଉତ୍ତର କବିଙ୍କର ଉପରୋକ୍ତ ଉକ୍ତିରୁ ସହଜେ ଅନୁମେୟ । ଚିତ୍ରଶିଳ୍ପକୁ କବି ତାଙ୍କର "ଶେଷ ଜୀବନର ପ୍ରିୟା" ବୋଲି କହିଛନ୍ତି । ଏଇ ପ୍ରିୟା ଏକ ନିଶା ପରି ସବୁବେଳେ ତାଙ୍କ ସହିତ ଲାଗି ରହିଥିଲା । କବିଙ୍କର ଶେଷ ଜୀବନର ଶିଳ୍ପସୃଷ୍ଟି-ପର୍ବଟି ସମଗ୍ର ଜୀବନବ୍ୟାପୀ ସାଧନାର ଏକ ପରିଶିଷ୍ଟ । କିନ୍ତୁ ଏଇ ପରିଶିଷ୍ଟଟି ଯେ ପୂର୍ଣ୍ଣମାତ୍ରାରେ ଭୂମିକାବିହୀନ, ଏପରି ନୁହେଁ । କୈଶୋରରେ ରବୀନ୍ଦ୍ରନାଥ ଯେଉଁ ଚିତ୍ରଚର୍ଚ୍ଚା କରୁଥିଲେ, 'ଜୀବନସ୍ମୃତି'ରେ ତାହାର ସୁନ୍ଦର ବର୍ଣ୍ଣନା ମିଳେ । ସେ ଲେଖିଛନ୍ତି, 'ମନେପଡ଼େ, ଦ୍ୱିପ୍ରହର ସମୟରେ ଗାଲିଚା ବିଛା ଘରର ଗୋଟିଏ କୋଣରେ ଛବି ଅଙ୍କା ଖାତା ନେଇ ଛବି ଆଙ୍କୁଛି ।'

ଚିତ୍ରକରର କଠୋର ସାଧନା ନୁହେଁ, କେବଳ ଛବି ଆଙ୍କିବାର ବଳବତ୍ତର ଇଚ୍ଛାକୁ ନେଇ ମନ ସହିତ ସେ ଖେଳିଛନ୍ତି—ଏକଥା କବି ନିଜେ ସ୍ୱୀକାର କରିଛନ୍ତି । ଦୀର୍ଘ ଦିନର ବ୍ୟବଧାନ ପରେ ପ୍ରୌଢ଼ତ୍ୱର ପ୍ରାରମ୍ଭରେ ଚିତ୍ରଲକ୍ଷ୍ମୀ ତାଙ୍କର ମନ ଆକର୍ଷଣ କରିଛି । କିନ୍ତୁ ତାହା ଶେଷ ବୟସର ବ୍ୟାପକ ଚିତ୍ରସୃଷ୍ଟିର ବହୁ ଆଗର କଥା । ସମସ୍ତେ ଜାଣନ୍ତି, ପାଣ୍ଡୁଲିପି ବାରମ୍ବାର ସଂଶୋଧନ କରି ପୃଷ୍ଠାଗୁଡ଼ିକ ଚିହ୍ନିତ କରିବା କବିଙ୍କର ଏକ ଖିଆଲି ମନୋବୃତ୍ତି ଓ ଏହା କ୍ରମେ ଏକ ଅଭ୍ୟାସରେ ପରିଣତ ହୋଇଥିଲା । ଏହି ଖିଆଲି ମନୋବୃତ୍ତିରୁ ହିଁ ପରବର୍ତ୍ତୀ କାଳରେ ଚିତ୍ରସୃଷ୍ଟିର ଜନ୍ମ । 'ପୂରବୀ' ରଚନା କାଳରୁ (୧୯୨୦) ଏହି ଅଭ୍ୟାସର ଆରମ୍ଭ; କିନ୍ତୁ ଏହି ସମୟର ବହୁ ଆଗରୁ ପାଣ୍ଡୁଲିପିର ପୃଷ୍ଠାରେ ଏକାବେଳକେ ସ୍ୱୟଂସମ୍ପୂର୍ଣ୍ଣ ଛବି ଆଙ୍କିବାର ଚେଷ୍ଟା ସିଲାଇଦହପର୍ବରେ ଦେଖାଯାଏ । ବନ୍ଧୁ ଜଗଦୀଶଚନ୍ଦ୍ର ବସୁଙ୍କ ନିକଟକୁ ଲେଖିଥିବା ଗୋଟିଏ ଚିଠିରୁ ଜଣାଯାଏ, ରବୀନ୍ଦ୍ରନାଥ

ଗୋଟିଏ ଦ୍ୱୈତ ବନ୍ଧ ନେଇ ଛବି ଆଙ୍କିବାରେ ବ୍ୟସ୍ତ । କବିଙ୍କ ବୟସ ସେତେବେଳକୁ ସତୁରି ଭିତରେ । ଶାନ୍ତିନିକେତନରେ ଏହାର ପର ଅଧ୍ୟାୟ ଆରମ୍ଭ ।

ରବୀନ୍ଦ୍ରନାଥ ଆଶ୍ରମରେ ପ୍ରଥମେ ବିଚ୍ଛିନ୍ନ ଭାବରେ କେତେକ ଛବି ଆଙ୍କିଥିଲେ । ଶାନ୍ତିନିକେତନର କଳାଭବନ ସେତେବେଳକୁ ସୃଷ୍ଟି ହୋଇ ନ ଥିଲା । ଏହା ହିଁ ରବୀନ୍ଦ୍ର-ଚିତ୍ରସୃଷ୍ଟିର ପ୍ରାକ୍‌କଥନ ।

'ପୂରବୀ' ରଚନାକାଳଠାରୁ ହିଁ ପାଣ୍ଡୁଲିପିର ପୃଷ୍ଠାଗୁଡ଼ିକ ଚିହ୍ନିତ କରିବା କବିଙ୍କର ଏକ ନିଶା ରୂପେ ଦେଖାଦେଲା ଓ ସେହି ଅପରିଷ୍କାର ରେଖାଜାଲ ମଧ୍ୟରେ ଅତର୍କିତ ଭାବରେ ଗୋଟିଏ ଗୋଟିଏ ରୂପ ଜନ୍ମଲାଭ କରିବାକୁ ଲାଗିଲା । ଏହି ଛବିଗୁଡ଼ିକ ପାଣ୍ଡୁଲିପି ସହିତ ଏକସୂତ୍ରରେ ଗ୍ରଥିତ । ଏହା ପରେ ଏହି ରୀତି ବଦଳିଛି । କବି ଶିଳ୍ପଚର୍ଚ୍ଚାର ଗୋଟିଏ ସ୍ୱତନ୍ତ୍ର ପଥ ପାଇଛନ୍ତି । ତାହାପରେ ରେଖାଗୁଡ଼ିକ ପାଣ୍ଡୁଲିପିର ଉପଜାତ ଅଂଶ ନ ହୋଇ ନିଜର ମହିମାବଳରେ ବିରାଟ ଶିଳ୍ପସୃଷ୍ଟି କ୍ଷେତ୍ରରେ ପ୍ରତିଷ୍ଠିତ ହୋଇଛି ।

—୨—

ରବୀନ୍ଦ୍ରନାଥଙ୍କ ଛବି ଏ ଦେଶର ଶିଳ୍ପ ଐତିହ୍ୟ ସଙ୍ଗେ ଯୋଗହୀନ, ଏକଥା କହିବା ନିଷ୍ପ୍ରୟୋଜନ । ବସ୍ତୁତଃ ରବୀନ୍ଦ୍ରନାଥ ଶିଳ୍ପସୃଷ୍ଟି କ୍ଷେତ୍ରରେ କେବଳ ଭାରତୀୟ କାହିଁକି, କୌଣସି ଐତିହ୍ୟର ଅନୁବର୍ତ୍ତୀ ନୁହନ୍ତି । ତାଙ୍କର ପଥ ନିଜସ୍ୱ । କବି ନିଜେ ଏହାକୁ 'ଅଶିକ୍ଷିତ ପଟୁତା' କହିଛନ୍ତି । କହିବା ବାହୁଲ୍ୟ, ସେ ଭାରତୀୟ ଐତିହ୍ୟକୁ ଗ୍ରହଣ ନ କରିଥିବାର କାରଣ ଭାରତୀୟ ଶିଳ୍ପର ତାଙ୍କ ଶ୍ରଦ୍ଧା ଆକର୍ଷଣରେ ଅସମର୍ଥତା ନୁହେଁ । ପ୍ରାଚୀନ ଭାରତୀୟ ଶିଳ୍ପ ପ୍ରତି ଯେପରି, ସମକାଳୀନ ଅବନୀନ୍ଦ୍ର, ନନ୍ଦଲାଲ ପ୍ରଭୃତିଙ୍କର ଶିଳ୍ପସୃଷ୍ଟି ପ୍ରତି ମଧ୍ୟ ସେହିପରି ତାଙ୍କର ଗଭୀର ଶ୍ରଦ୍ଧା ଓ ଅନୁରାଗ ଥିଲା । ଏହା ସତ୍ତ୍ୱେ ମଧ୍ୟ ରବୀନ୍ଦ୍ରନାଥ ଆପଣାର ସ୍ୱତନ୍ତ୍ର ପଥରେ ଅଗ୍ରସର ହୋଇଥିଲେ ।

ଅନେକେ ଅନୁମାନ କରନ୍ତି ଯେ ପାଶ୍ଚାତ୍ୟ ଶିଳ୍ପାଦର୍ଶ ଓ ଶିଳ୍ପପଦ୍ଧତିର ଅନୁସରଣରେ ସେ ସୃଷ୍ଟିଇଚ୍ଛାକୁ ବିକଶିତ କରିବାକୁ ଚାହୁଁଥିଲେ; କିନ୍ତୁ ଏଇ ଅନୁମାନ ମୂଳରେ କୌଣସି ଭିତ୍ତି କିମ୍ବା ଯୁକ୍ତି ନାହିଁ । ପ୍ରଥମତଃ ଇଉରୋପୀୟ ଚିତ୍ରକଳାର ପ୍ରଧାନ ମାଧ୍ୟମ ତୈଳ ଓ ରଙ୍ଗ । ତାହାର ବିଶିଷ୍ଟ ରୀତିକୁ ରବୀନ୍ଦ୍ରନାଥ ପରିତ୍ୟାଗ କରିଛନ୍ତି । ତୈଳଚିତ୍ର ସେ କେବେ ଆଙ୍କି ନାହାନ୍ତି । ପାଣି ଓ ରଙ୍ଗ ରବୀନ୍ଦ୍ରନାଥଙ୍କର ପ୍ରିୟ; କାରଣ ଶୀଘ୍ର ଶୁଖିଯିବାର କ୍ଷମତା ଏହାର ଅଛି, ରେଖାରେ ଯେପରି ରଙ୍ଗରେ ମଧ୍ୟ ସେହିପରି ରବୀନ୍ଦ୍ରନାଥଙ୍କର ପ୍ରୟୋଗଭଙ୍ଗୀ ନିଜସ୍ୱ । ପ୍ରୟୋଗର ବ୍ୟକ୍ତିକ କୌଶଳଟି ମଧ୍ୟ ତାଙ୍କର ସ୍ୱତନ୍ତ୍ର । ତୁଳୀର ଅନ୍ୟ ପାଖରେ, ଆଙ୍ଗୁଠି ସାହାଯ୍ୟରେ, କଟନ୍ ଓ ତାଳୁ ସାହାଯ୍ୟରେ ରଙ୍ଗ ଦେବା ତାଙ୍କ ଆବିଷ୍କୃତ ଏକ ବିଚିତ୍ର ପଦ୍ଧତି । ଏହା ବ୍ୟତୀତ ଇଉରୋପୀୟ ଚିତ୍ରଶିଳ୍ପକୁ ରବୀନ୍ଦ୍ରନାଥ ଶ୍ରଦ୍ଧା କଲେ ମଧ୍ୟ, ଭାରତୀୟ ଶିଳ୍ପୀର

ଇଉରୋପୀୟ ଚିତ୍ରରୀତିର ଅନୁକରଣପଦ୍ଧତି ତାଙ୍କୁ ଭଲ ଲାଗି ନାହିଁ । ଆମର ଦେଶୀୟ କଳାବିଦ୍ୟାଳୟଗୁଡ଼ିକରେ ବିଦେଶୀ ଶିକ୍ଷାପଦ୍ଧତିକୁ ମଧ୍ୟ ସେ ଧିକ୍କାର କରିଛନ୍ତି । ସେ କହିଛନ୍ତି, "କଳା ଶିଳ୍ପବିଦ୍ୟାଳୟରେ ଆମ୍ଭମାନଙ୍କୁ ବାଧ୍ୟ ହୋଇ ଇଉରୋପୀୟ ଚିତ୍ର ଅନୁକରଣରେ ଆଙ୍କିବାକୁ ହୋଇଥାଏ । ଫଳରେ ହାତ ଓ ମନ ବିଲାତି ଛବିର ଗ୍ରାସରେ ଅଭିଭୂତ ହୋଇଯିବା ଛଡ଼ା ଅନ୍ୟ ଉପାୟ ନାହିଁ । ସେହି ଅଭ୍ୟସ୍ତ ବାଟରୁ ଫେରି ଦେଶୀୟ ଆଖିରେ ଦେଶର ଚିତ୍ରକୁ ଦେଖିବା ଆମ୍ଭମାନଙ୍କ ପକ୍ଷରେ କଠିନ ହୋଇପଡ଼େ ।" (ପ୍ରାଚୀନ ସାହିତ୍ୟ)

—ଗ—

ସାରା ଜୀବନରେ ରବୀନ୍ଦ୍ରନାଥ ଯେଉଁସବୁ ଛବି ଅଙ୍କିଛନ୍ତି, ସେଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରାଯାଇପାରେ—ଗୋଟିଏ ହେଉଛି ଭାବଗତ ଓ ଅନ୍ୟଟି ରୂପଗତ । ଏ ଦୁଇଟି ସମ୍ପୂର୍ଣ୍ଣ ପୃଥକ, ଯେପରି ଦୁଇ ମାନସିକ ପରିସ୍ଥିତିରୁ ଦୁଇଟି ଭିନ୍ନ ସୃଷ୍ଟି ।

ପ୍ରଥମ ଗୋଷ୍ଠୀ ସମୟ ଦିଗରୁ ପ୍ରଥମେ ଦେଖାଦେଇଛି । ଏଗୁଡ଼ିକର ଆକୃତି ଓ ପ୍ରକୃତିର ବିଶେଷତ୍ୱକୁ ନେଇ ଗୋଟିଏ ନାମ ଦିଆଯାଇପାରେ । ଏଗୁଡ଼ିକ ଛବି ରାଜ୍ୟର ଛଡ଼ା ( ଛଡ଼ା ଗ୍ରାମ୍ୟ କବିତା; ବଙ୍ଗଳାର ନିଜସ୍ୱ ଲୋକସାହିତ୍ୟର ଏକ ବିଭାଗ ) । ବାଣୀ ଶିଳ୍ପରେ ଯେପରି ଛଡ଼ାର ଛବି, ଚିତ୍ରଶିଳ୍ପରେ ସେହିପରି ଛବିର ଛଡ଼ା । କଲମର ଆଞ୍ଚୁଡ଼ାରେ ବା ତୁଳୀର ରେଖାରେ ଅଙ୍କିତ ବିଚିତ୍ର ମୁହଁ, ଅଦ୍ଭୁତକାୟ ଜୀବଜନ୍ତୁ ଏହି ଶ୍ରେଣୀର ଅନ୍ତର୍ଗତ । ଏଗୁଡ଼ିକରେ ପ୍ରକୃତିକୁ ଅନୁସରଣ କରିବାର କୌଣସି ଚେଷ୍ଟା ନାହିଁ । ଏହିସବୁ ଆକୃତି ମଧ୍ୟରେ ମଣିଷ, ପଶୁ ଓ ଗଛପତ୍ରର ମୌଳିକ ରୂପ କିଛିଟା ଭାବରେ ପ୍ରତିଫଳିତ ହେଲେ ହେଁ ଏଗୁଡ଼ିକ ମୁଖ୍ୟତଃ ସ୍ୱାଧୀନ ସୃଷ୍ଟିର ଆନନ୍ଦରେ ଅଙ୍କିତ । ଏଗୁଡ଼ିକ ଦର୍ଶକ ମନରେ କୌତୂହଳ ସୃଷ୍ଟି କରେ । ବାସ୍ତବିକ ସ୍ରଷ୍ଟା ମନରେ କୌତୁକବୋଧ ହିଁ ଦର୍ଶକ ମନରେ ସଞ୍ଚାରିତ ହୁଏ । ଏ ଛବିର ରସ ଆଳଙ୍କାରିକ ଅନ୍ୟ କୌଣସି ରସ ନୁହେଁ, ବରଂ କୌତୁକ ରସ । ସୃଷ୍ଟିଗୁଡ଼ିକ ଚିନ୍ତା ବା ଭାବନାରୁ ଉଦ୍ଭୂତ ନୁହେଁ; ଏପରି କି କୌଣସି ଗମ୍ଭୀର ଭାବ ବା ଆବେଗର ପ୍ରକାଶ ନୁହେଁ । ଏଗୁଡ଼ିକ ଭାବ ବା ଭାବନା-ଭାରମୁକ୍ତ ହାଲୁକା ମନର ନିରୁଚ୍ଚା ଖୁସିର ଖିଆଲରେ ରଚିତ ଏକ ଅଦ୍ଭୁତ ଉଦ୍ଭଟ ଜଗତ । କବିଙ୍କ ନିଜ କଥାରେ—"ଯେତେବେଳେ ଅନ୍ୟ କିଛି ଭଲ ଲାଗେ ନାହିଁ, ସେତେବେଳେ ଛବି ଆଙ୍କେ । କିନ୍ତୁ ମୋର ଚିତ୍ର ରେଖାର ଚିତ୍ର, ରଙ୍ଗର ଚିତ୍ର, ଭାବଚିତ୍ର ନୁହେଁ । କଥା ଭିତରେ ଅର୍ଥ ଦେବା ପରି ରେଖାକୁ ଦେବାକୁ ହୁଏ ରୂପ । ଏହି ରୂପ ବିନା ବ୍ୟାଖ୍ୟାରେ ମଣିଷକୁ ଭୁଲାଏ । ତୁଳୀ ଛଡ଼ାରେ ରୂପାନ୍ତରିତ ହୁଏ । ଏହାର ଅନ୍ୟ କୌଣସି ଦାୟିତ୍ୱ ନାହିଁ ।"

ଏହି ଛବିଗୁଡ଼ିକର ଉପାଦାନ ବିଶ୍ଳେଷଣ କଲେ ଦୁଇଟି ଜିନିଷ ଦେଖିବାକୁ ମିଳେ । ପ୍ରଥମତଃ ପ୍ରାକୃତିକ ବସ୍ତୁ ନିରପେକ୍ଷ 'ସ୍ୱତନ୍ତ୍ର' ରୂପମୟତା, ଦ୍ୱିତୀୟରେ ସେହି ରୂପସୃଷ୍ଟିର ପଛରେ ଥିବା କୌତୁକ ଦୃଷ୍ଟି । ଜୀବଜନ୍ତୁର ଆକୃତିଗତ ଗଠନ-ଭଙ୍ଗୀରେ ପ୍ରତ୍ୟାଶିତ ରେଖାଭଙ୍ଗୀକୁ ବିପର୍ଯ୍ୟସ୍ତ କରି ଅପ୍ରତ୍ୟାଶିତ ଧକ୍କାରେ ଦର୍ଶକର ମନରେ ଆନନ୍ଦର ଉଚ୍ଛ୍ୱାସ ଉଦ୍ରେକ କରିବା ହିଁ ଯେପରି ଶିଳ୍ପୀର କାର୍ଯ୍ୟ । ଏହି କୌତୁକରସ ବ୍ୟଙ୍ଗରସ ନୁହେଁ, ଏହା ନିପଟ ଅସଙ୍ଗତିର ଲଘୁ ଓ ନିର୍ମଳ ଆନନ୍ଦ । ଭାବନାର ଭାରରେ ଭାରାକ୍ରାନ୍ତ ନୁହେଁ, ଭାବର ଘନ ବାଷ୍ପରେ ଅଚ୍ଛନ୍ନ ନୁହେଁ; ଏହା ଯେପରି ସହଜ ମନରେ ଏକ ମୁକ୍ତ ଜଗତ । ଭାବଜଗତର ଭାରାକର୍ଷଣ ଏଠାରେ ଲୁପ୍ତ ହୋଇ ଏହାର ପରିବେଶକୁ ଏପରି ଲଘୁ କରି ଦେଇଛି ଯେ ଏଠାରେ ଦାୟିତ୍ୱହୀନ ଭାବରେ ଦୁଇ ଘଡ଼ି ନିଶ୍ଚିନ୍ତ ଜୀବନ ଯାପନ କରାଯାଇ-ପାରେ । ମନ ଅର୍ଥଜଞ୍ଜାଳଶୂନ୍ୟ ଜଗତକୁ ଆସି ଦୁର୍ଲଭ ଛୁଟି ଉପଭୋଗ କରେ ।

ଚିତ୍ରରାଜ୍ୟର କବି ସାହିତ୍ୟ-ଜଗତରେ ଏହି 'ଛଡ଼ା'ଗୁଡ଼ିକୁ 'ମୁକ୍ତିର ଜଗତ' ନାମରେ ଅଭିହିତ କରି କହିଛନ୍ତି, "ଲଘୁକାୟ ବନ୍ଧନହୀନ ମେଘ ପରି ଛଡ଼ା-ଗୁଡ଼ିକ ଭାରବିହୀନ, ଅର୍ଥବନ୍ଧନଶୂନ୍ୟ" (ଲୋକସାହିତ୍ୟ) । ଛଡ଼ାଗୁଡ଼ିକୁ କବି ଭାରମୁକ୍ତ ଶରତ୍ ମେଘ ସହିତ ତୁଳନା କରିଛନ୍ତି ।

ରବୀନ୍ଦ୍ର ଚିତ୍ରସୃଷ୍ଟି ସହିତ ଛଡ଼ା ରାଜ୍ୟର ଯେ କେବଳ ସାଦୃଶ୍ୟ ଅଛି ତାହା ନୁହେଁ, ଏହାର ଦାନ ମଧ୍ୟ ରହିଛି । ଚିତ୍ରସୃଷ୍ଟି ସମୟରେ କବି ଏହି 'ଛଡ଼ା' ଜଗତକୁ ସ୍ମରଣ ରଖିଥିଲେ କି ନାହିଁ କିଏ ଜାଣେ ? କିନ୍ତୁ ସୃଷ୍ଟିନିରତ ମନର ଅବଚେତନାରେ ଏଗୁଡ଼ିକ ଯେ ଅବଶ୍ୟ କାର୍ଯ୍ୟ କରିଛି, ଏ କଥା ଜୋର କରି କୁହାଯାଇପାରେ । କାରଣ ଏକ ସମୟରେ ସେ ଭାଷା-ରାଜ୍ୟର ଏହି ଆଶ୍ଚର୍ଯ୍ୟ ଜଗତକୁ ଚିତ୍ରର ରୂପରାଜ୍ୟରେ ରୂପାନ୍ତର କରିବାର ପ୍ରୟାସ କରିଥିଲେ । ତାଙ୍କରି ନିଜ କଥାରେ—"ଯେପରି ସୁମଧୁର ଛନ୍ଦ ଶୁଣିଲେ ସେହି ଛନ୍ଦରେ ଗୀତ ରଚନା କରି ଗାଇବାକୁ ଇଚ୍ଛା ହୁଏ, ସେହିପରି ଏହିସବୁ ଭାଷାର ଚିତ୍ର ଦେଖିଲେ ଏହାକୁ ରେଖାଚିତ୍ରରେ ଅନୁବାଦ କରି ଆଙ୍କିବା ପାଇଁ ଇଚ୍ଛା ହୁଏ ।" (ଲୋକ ସାହିତ୍ୟ)

ରବୀନ୍ଦ୍ରନାଥ ସତେ ଯେପରି ତାଙ୍କ ଚିତ୍ରରେ 'ଛଡ଼ା'ର ଛବିକୁ ଛବିର ଛଡ଼ାରେ ରୂପାନ୍ତରିତ କରିଛନ୍ତି । ତାଙ୍କର ଶିଳ୍ପ, ଅଜନ୍ତା, ରାଜପୁତ, ମୋଗଲ, ଅବନୀନ୍ଦ୍ର କିମ୍ବା ନନ୍ଦଲାଲଙ୍କ ପଥ ଅନୁସରଣ ନ କରି ଆପଣା ପଥର ପଥିକ ହୋଇଛି । ଗୋଟିଏ କଥାରେ କହିବାକୁ ଗଲେ ବଙ୍ଗଳାର ଶିଳ୍ପଜଗତ ତାଙ୍କୁ ପଥ ନ ଦେଖାଇଲେ ମଧ୍ୟ ବଙ୍ଗଳାର ଗ୍ରାମ-ସାହିତ୍ୟ ତାଙ୍କୁ ପଥପ୍ରଦର୍ଶନ କରିଛି ।

'ଛଡ଼ା' ପରି ରବୀନ୍ଦ୍ରନାଥଙ୍କ ଏହି ଚିତ୍ରଗୁଡ଼ିକ ମଧ୍ୟରେ ବାଲ୍ୟ ସରଳତା, ଉଜ୍ଜ୍ୱଳ ନବୀନତା, ଅସଂଗତତା ଓ ଅସମ୍ଭବ ସହିତ ସମ୍ଭାବ୍ୟ ଲକ୍ଷ୍ୟ କରାଯାଏ । ଛଡ଼ା ପରି ଏହାର ମୁଖ୍ୟ ରସ କୌତୁକରସ । କବି ନିଜେ ଲେଖିଛନ୍ତି—"କେବଳ

ଏଇ ରସଦ୍ୱାରା ଆକୃଷ୍ଟ ହୋଇ 'ଛଡ଼ା' ସଂଗ୍ରହରେ ପ୍ରବୃତ୍ତ ହୋଇଥିଲି ।" ଯେଉଁ ରସ ତାଙ୍କୁ 'ଛଡ଼ା' ସଂଗ୍ରହରେ ପ୍ରବୃତ୍ତ କରିଛି, ସେଇ ରସର ପ୍ରେରଣାରେ ତାଙ୍କର ତୂଳୀରେ ବିଚିତ୍ର ରୂପରାଜ୍ୟର ସୃଷ୍ଟି ।

ବଙ୍ଗଳା ଲୋକସାହିତ୍ୟର ଏହି ବିଭାବଟି ସହିତ ରବୀନ୍ଦ୍ରନାଥଙ୍କ ଚିତ୍ରର ଯୋଗ ଯେ ନିବିଡ଼, ତାହା ଆନୁମାନିକ ନୁହେ । ତାର ଆଉ ଗୋଟିଏ ପ୍ରମାଣ ହେଉଛି, କବି ଶେଷ ବୟସରେ ଛବି ରଚନା ସମୟରେ ଅଜସ୍ର ଛଡ଼ା ରଚନାରେ ବ୍ରତୀ ହୋଇଛନ୍ତି । 'ଖାପ ଛଡ଼ା', 'ଛଡ଼ାର ଛବି', 'ଛଡ଼ା'ପ୍ରଭୃତି ଗ୍ରନ୍ଥରେ ସେଗୁଡ଼ିକ ସଙ୍କଳିତ । ଛବି ପରି ସେଗୁଡ଼ିକ ଭାଷା-ରାଜ୍ୟର ଅର୍ଥହୀନ ସୃଷ୍ଟି । କଲମ ଓ ତୂଳୀରେ ଅଙ୍କା ଭାଷାର ବାହ୍ୟ ପାର୍ଥକ୍ୟକୁ ବାଦ ଦେଲେ ମୂଳତଃ ଏମାନେ ଏକ ଜାତୀୟ । ଏହି ଐକ୍ୟ ନିଃସଂଶୟ ରୂପେ ଆତ୍ମପ୍ରକାଶ କରିଛି ଯେଉଁଠି 'ଛଡ଼ା'ଗୁଡ଼ିକୁ କବି ସଚିତ୍ର ରୂପ ଦେଇଛନ୍ତି । କବି ନିଜେ କହିଛନ୍ତି—

"ଯେମନ ତେମନ ବାଙ୍କା ବାଙ୍କା
କିଛୁ ଭାଷା ଦିଯେ, କିଛୁ ତୂଲି ଦିଯେ ଆଙ୍କା
ହଲେମ ଉଜାଡ଼ କରେ ଝୁଲି ।" (ସେ)

ଭାଷାରେ ଓ ତୂଳୀରେ ଏଇ 'ଯେମନ ତେମନ' ଛବି ଅର୍ଥହୀନ, କିନ୍ତୁ ରୂପବାନ । ତେଣୁ ଦ୍ରଷ୍ଟା ଏହାର ପ୍ରେମରେ ନ ପଡ଼ି ରହିପାରେ ନାହିଁ । କବିଙ୍କ ଭାଷାରେ ଏଗୁଡ଼ିକ ପାଗଳାମିର ଅନାସୃଷ୍ଟି ।

ଏହି ଅନାସୃଷ୍ଟି ଗୁଡ଼ିକ ହେଲା ରବୀନ୍ଦ୍ର ଚିତ୍ରର ଗୋଟିଏ ରୂପ । ଆଉ ଗୋଟିଏ ରୂପ ଅଛି, ଯାହା ଭାବ ଓ ଅଭିବ୍ୟକ୍ତିରେ ଭିନ୍ନ ଜଗତର ବସ୍ତୁ । ତାହାର ଉପାଦାନଗୁଡ଼ିକ ସମ୍ପୂର୍ଣ୍ଣ ପୃଥକ । ଏହି ଛବିଗୁଡ଼ିକ ଦେଖିଲେ ମନେ ହେବ କେବଳ ତୂଳୀଟି ଅଲଗା ନୁହେ, ଆଙ୍କିବା ମଣିଷଟି ମଧ୍ୟ ସତେ ଯେପରି ସମ୍ପୂର୍ଣ୍ଣ ଭିନ୍ନ । କିନ୍ତୁ ରବୀନ୍ଦ୍ର-ଚିତ୍ରର ସେହି ରୂପର ଆଲୋଚନାକୁ ଏହି ପ୍ରବନ୍ଧର ସୀମିତ ପରିସରର ବାହାରେ ରଖାଗଲା ।

———

# ଜମିଦାର ରବୀନ୍ଦ୍ରନାଥ

## ଶ୍ରୀ ଅନ୍ନଦାଶଙ୍କର ରାୟ

## ଅନୁବାଦ—ଶ୍ରୀ ଖଗେଶ୍ୱର ମହାପାତ୍ର

ସମ୍ପ୍ରତି ମୁଁ ଟଲଷ୍ଟୟଙ୍କ ଜୀବନ ସହିତ ରବୀନ୍ଦ୍ରନାଥଙ୍କ ଜୀବନ ମିଳେଇ ଦେଖିବାକୁ ଯାଇ ଅନେକ ଜାଗାରେ ଆଶ୍ଚର୍ଯ୍ୟ ରକମର ମେଳ ଲକ୍ଷ୍ୟ କଲି । ଯେଉଁଟି ମୋତେ ବିଶେଷ ଭାବରେ ଦୋହଲେଇ ଦେଲା, ସେଇଟି ସେମାନଙ୍କର 'ପ୍ରସ୍ଥାଣ ପରେ ହିଁ ପ୍ଲାବନ' ।

ରୁଷ ଗୁରୁଙ୍କ ତିରୋଭାବ ପରେ ପରେ ସାତୋଟି ବର୍ଷ ଯାଉଁ ନ ଯାଉଁ ଘଟିଗଲା ବିପ୍ଳବ । ତାଙ୍କ ନିଜ ପୁତ୍ରକନ୍ୟାମାନଙ୍କୁ ବିଦେଶକୁ ପଳାଇଯିବାକୁ ପଡ଼ିଥିଲା । ଯେତେଦୂର ଜାଣେ, ଆଜିଅବଧି ସେମାନେ ସ୍ୱଦେଶକୁ ଫେରି ନାହାନ୍ତି । ଆଉ ଟଲଷ୍ଟୟଙ୍କ ଭାବଧାରା ମଧ୍ୟ ବୌଦ୍ଧଧର୍ମ ପରି ନିଜ ବାସଭୂମିରେ ବିଲୁପ୍ତ ।

ସେହିପରି ଭାରତୀୟ ଋଷିଙ୍କର ଅନ୍ତର୍ଦ୍ଧାନର ସାତବର୍ଷ ପରେ ହିଁ—ଠିକ୍ ସମାନ ସାତ ବର୍ଷ ପରେ—ଭାରତବର୍ଷ ହୋଇଗଲା ଦୁଇ ଭାଗ । ଭାଗେ ରହିଗଲା ଭାରତର ବାହାରେ । ବଙ୍ଗଦେଶ ଦ୍ୱିଖଣ୍ଡ ହେଲା । ଖଣ୍ଡିକର ନାମରୁ 'ବଙ୍ଗ, ଶବ୍ଦଟି ଲିଭିଗଲା କିଛି ଦିନ ପରେ । ରବୀନ୍ଦ୍ରନାଥଙ୍କ ଜମିଦାରୀ ପଡ଼ିଲା ପୂର୍ବ ପାକିସ୍ଥାନରେ, ଅନ୍ୟାନ୍ୟ ଜମିଦାରୀ ସଙ୍ଗେ ତା ମଧ୍ୟ ରାଷ୍ଟ୍ରସାତ୍ ହେଲା । ଯେଉଁଠି ତାଙ୍କର ଯୌବନର ଶ୍ରେଷ୍ଠ ଦିନଗୁଡ଼ିକ କଟିଥିଲା, ସେଇଠି ତାଙ୍କ ପୁତ୍ରକନ୍ୟାଗଣ ଆଜି ବିଦେଶୀ ନାଗରିକ । ବଞ୍ଚି ରହିଥିଲେ ସେ ମଧ୍ୟ ହୋଇଥାନ୍ତେ 'ଏଲିୟେନ' ।

ଆଉ ତାଙ୍କର ସେଇସବୁ ବିଖ୍ୟାତ ଜାତୀୟ ସଙ୍ଗୀତ ? 'ଆମାର ସୋନାର ବାଂଲା, ଆମି ତୋମାୟ ଭାଲୋବାସି', 'ଆଜି ବାଂଲା ଦେଶେର ହୃଦୟ ହତେ କଖନ ଆପନି ', 'ବାଂଲାର ମାଟି ବାଂଲାର ଜଳ ', ପାକିସ୍ଥାନରେ ଏ ଗୀତ କେହି ଗାଏନା, ଗାଇଲେ ଦେଶଦ୍ରୋହ ହେବ । ଏ ପାଖରେ ବି କିଏ ଗାଏ ? ଗାଇବେ କେଉଁ ମୁହଁରେ ? କେହି ବିଶ୍ୱାସ କରେନା ଯେ ସେସବୁ ଦିନ ଫେରିଆସିବ । କିମ୍ବା ପୁଣି ବଙ୍ଗ ଦେଶ ଏକ ହେବ । ଆନ୍ତରିକତାର ସହିତ ପ୍ରାର୍ଥନା ବି କରିପାରନ୍ତି ନାହିଁ ଯେ, 'ହେ ଭଗବାନ, ଏକ ହେଉ, ଏକ ହେଉ ।'

ଅଥଚ ଟଲଷ୍ଟୟଙ୍କ ପରି ରବୀନ୍ଦ୍ରନାଥ ମଧ୍ୟ ସାରା ଜୀବନ ଧରି ସାଧନା କରିଥିଲେ, ଯେପରି ଏହିପରି କିଛି ପରେ ନ ଘଟେ । ତାଂସେ କରିଥିଲେ ନିଜର

ସୀମା ଭିତରେ । ଶାନ୍ତିନିକେତନର କଥା, ରବୀନ୍ଦ୍ର ସାହିତ୍ୟର କଥା, ସମସ୍ତେ ଜାଣନ୍ତି—ମୁଁ ଆଜ କହିବି ଜମିଦାରୀର କଥା ।

ଇଣ୍ଡିଆନ୍ ସିଭିଲ ସର୍ଭିସରେ ଯୋଗଦେବା ପୂର୍ବରୁ ମୁଁ ଯେତେବେଳେ ଲଣ୍ଡନରେ ପ୍ରୋବେସନର, ମୋର ଜଣେ ବନ୍ଧୁ ମୋତେ କହିଲେ—ତୁମେ ତ ଦେଶକୁ ଫେରିଯାଇ ଶାସକ ହେବ; ଟିକିଏ ଖୋଜି ନେବ ତ, ରବୀନ୍ଦ୍ରନାଥ କ'ଣ ସତରେ ଜଣେ ପ୍ରଜାପୀଡ଼କ ଜମିଦାର ?

ମୁଁ ତ ଅବାକ୍ । ଜାଣିବାକୁ ଚାହିଁଲି କେଉଁଠୁ ଏକଥା ସେ ଶୁଣିଲେ । ସେ ଟିକେ ମୁରୁକି ହସି କହିଲେ, 'କାବ୍ୟ ପଢ଼ି ଯେମିତି ଭାବ, କବି ସେମିତି ନୁହନ୍ତି ।'

ମନରେ ଆଘାତ ଲାଗିଲା, ବନ୍ଧୁ ସାନ୍ତ୍ୱନା ଦେଲେ ଏଇ କଥା କହି—ଦେଖ, ଜମିଦାର ମାତ୍ରକେ ପ୍ରଜାପୀଡ଼କ । ନ ହେଲେ ଜମିଦାରୀ ଚଳେନା ।

ପ୍ରସଙ୍ଗଟା ମୁଁ ଭୁଲିଗଲି । କେତେ ବର୍ଷ ପରେ ମତେ ମୋର ପ୍ରଥମ ମହକୁମା ଦିଆଗଲା ରାଜସାହି ଜିଲାର ନଓଗାଁଓ । ବନ୍ଧୁମାନେ ରସିକତା କରି କହିଲେ—ଯାହାର ଯେଉଁଠି ସ୍ଥାନ । ସରକାର ବାହାଦୁର ମଣିଷ ଚହ୍ନନ୍ତି । ନଂହେଲେ ଏତେ ଲୋକ ଥାଉଁ ଥାଉଁ ତମକୁ କାହିଁକି ଗଞ୍ଜା ମହଲକୁ ପଠାନ୍ତେ ।

ଗଞ୍ଜେଇ ଚାଷ ପାଇଁ ନଓଗାଁଓର ସୁଗନ୍ଧ ବହୁଦୂର ପ୍ରସାରିତ । ସେଠାକୁ ଯାଇ ସତକୁ ସତ ଗଞ୍ଜେଇ ଗନ୍ଧରେ ମତେ ନିଶା ଧରିଗଲା । ପବନରେ ବି ଗଞ୍ଜେଇ ଗନ୍ଧ । ତା ଛଡ଼ା ଗଞ୍ଜା ଚାଷୀମାନଙ୍କର ଗୋଟିଏ ସମବାୟ ପ୍ରତିଷ୍ଠାନ ଥିଲା । ପୁଣି ତା ଅଧୀନରେ ଆଉ କେତୋଟି ଉପପ୍ରତିଷ୍ଠାନ ଥିଲା । ଏଇସବୁ ନେଇ ରହିବା ମଧ୍ୟ ଗୋଟିଏ ପ୍ରକାର ନିଶା । ମହକୁମା ଶାସକର ଜୀବନଟା ଏମିତିକା ବିଚିତ୍ର, ସତେ ଯେମିତିକା ଷୋଳ ଫଳାବାଲା ଛୁରୀ ।

ଜମିଦାରମାନଙ୍କ ପାଇଁ ଉତ୍ତର ବଙ୍ଗ ବିଖ୍ୟାତ । ବହୁ ଜମିଦାରଙ୍କ ସହିତ ଆଳାପ ହେଲା । ବୁଲି ବୁଲି ତାଙ୍କର ଜମିଦାରୀସବୁ ଦେଖିଲି । ଖିଆଲ ନ ଥିଲା ଯେ, ରବୀନ୍ଦ୍ରନାଥଙ୍କ ଜମିଦାରୀ ମଧ୍ୟ ମୋରି ମହକୁମାରେ । ଦିନେ ପତିସରରୁ ଆମନ୍ତ୍ରଣ କରିବାକୁ ଆସି ପହଞ୍ଚିଲେ ଠାକୁର ଇଷ୍ଟେଟର ଜଣେ ପ୍ରତିନିଧି ।

ହାତରେ ଅନ୍ୟ କାମ ଥିଲେ ବି ତତ୍କ୍ଷଣାତ୍ ରାଜି ହୋଇଗଲି । କିନ୍ତୁ ପତିସରକୁ ଯିବା ଖୁବ ସହଜ ବ୍ୟାପାର ନୁହେଁ । ନୌକାରେ ଯିବାକୁ ପଡ଼େ କିମ୍ବା ପାଲିଙ୍କିରେ ବା ହାତୀ ଉପରେ । ଥରେ ଥରେ ଏକ ଏକ ଭାବରେ ଯାଇଛି । କିନ୍ତୁ ପ୍ରଥମ ବାର ପାଲିଙ୍କିରେ ଯାଇ କି ଯନ୍ତ୍ରଣା ! ମୁଁ ପଶେ ତ ମୋ ଦେହଟା ପଶେ ନା । ଦେହ ପଶେ ତ ହାତ ଗୋଡ଼ ମୋଡ଼ି କୁଣ୍ଡଳୀ ପରି ଯାକିମୁକି ହୋଇ ବସିବାକୁ ହୁଏ । ସେଥିରୁ ବାହାରି ଆସିବା ତହୁଁ କଷ୍ଟ ।

ପତିସରରେ ପହଞ୍ଚି ମନଟା ଖୁସିରେ ପୂରିଗଲା । ରବୀନ୍ଦ୍ରନାଥଙ୍କ ପତିସର ! ତୀର୍ଥବିଶେଷ । ଆଉ କେତେ ଥର ସେଠାକୁ ଯାଇଛି । ପରବର୍ତ୍ତୀ କାଳରେ ରାଜସାହି

ଜିଲାର କଲେକ୍ଟରର ଖବରରେ ମଧ୍ୟ ଯାଇଛୁ । ମୋ ବ୍ୟବହାର ପାଇଁ କେବେ କେବେ ପତିସର ଜମିଦାରଙ୍କଠାରୁ ହାଉସବୋଟ ବି ପାଇଛୁ । କବିଙ୍କ ପରି ସେ ହାଉସ ବୋଟରେ ଘୁରି କଟାଇଛୁ । ତେବେ ନାଗର ନଦୀଟା ଗୋଟେ ଖାଲ୍ ପରି ଅପ୍ରଶସ୍ତ । ସେଥିରେ ସେମିତି ସ୍ରୋତ ନାହିଁ । ଆତ୍ରାଇ ତାଠାରୁ ଅନେକ ଚଉଡ଼ା ଏବଂ ସ୍ରୋତଶୀଳା । ଆତ୍ରାଇ ଘାଟ ଷ୍ଟେସନଠାରୁ ଆତ୍ରାଇ ନଦୀରେ ଯିବାକୁ ହୁଏ । ସେଇଟା ବେଶ ଆରାମ ଲାଗେ ।

ଜମିଦାରୀ ଦେଖିବା କାମ ରବୀନ୍ଦ୍ରନାଥ ଅନେକ ଦିନରୁ ଛାଡ଼ି ଦେଇଥିଲେ, ସେଇ ଯେଉଁ ଦିନରୁ ଆଶ୍ରମ-ବିଦ୍ୟାଳୟ ପ୍ରତିଷ୍ଠା କରି 'ଶାନ୍ତିନିକେତନରେ ବାସ କରିବାକୁ ଆରମ୍ଭ କଲେ । ମଝିରେ ମଝିରେ ମାହାଲକୁ ଯାହା ଆସୁଥିଲେ, ତା' ବି ବହୁ ଦିନ ହେଲା ବନ୍ଦ । ଯାହାକୁ ଟାଣିଛୁ ଚୀନଠାରୁ ପେରୁ, ଟାଣିବ ପତିସର ଶିଲାଇଦା ! ଇତି ମଧ୍ୟରେ ଏକ ସମୟରେ ତାଙ୍କ ଜମିଦାରୀ ଭାଗ ହୋଇଗଲା । କବିଙ୍କ ଭାଗରେ ପଡ଼ିଲା ପତିସର ଓ ତା'ର ନିକଟବର୍ତ୍ତୀ ଅଞ୍ଚଳ । ତାଙ୍କ ଭାଇ ସତ୍ୟେନ୍ଦ୍ରନାଥଙ୍କ ଭାଗରେ ପଡ଼ିଲା ଶିଲାଇଦା । ମୁଁ ଯେତେବେଳେ କୁଷ୍ଟିୟା ମହକୁମାର ଶାସକ ହୋଇ ଶିଲାଇଦା ଦେଖିବାକୁ ଯାଏ, ତା ଆଗରୁ ଦେଣା ଦାୟରେ ସେଠିକା ଜମିଦାରୀ ବିକି ହୋଇଯାଇଥିଲା । ସେତେବେଳେ ମାଲିକ ଭାଗ୍ୟକୁଲର ରାୟଗଣ ।

ପତିସରରେ ଯାହା ଦେଖିଲି, ତାହା ପଡ଼ତିଦଶା । ଝୋଟ ବଜାର ମାନ୍ଦା; ତେଣୁ ଚାଷୀମାନଙ୍କ ହାତରେ ପଇସା ନାହିଁ । ଜମିଦାରୀ କୌଣସିମତେ ଚାଲୁଛି; କିନ୍ତୁ ପ୍ରଜାମାନଙ୍କୁ ଅଳ୍ପ ସୁଧରେ କରଜ ଦେବା ପାଇଁ ଯେଉଁସବୁ ବ୍ୟାଙ୍କ ଦରଦୀ ରବୀନ୍ଦ୍ରନାଥ ସ୍ଥାପନ କରିଯାଇଥିଲେ, ସେସବୁ ପ୍ରାୟ ଅଚଳ । ବହୁ ଟଙ୍କା ଖାତକମାନଙ୍କ ଘରେ ଅଟକା ପଡ଼ିଛି । ଅତି କଷ୍ଟରେ ଚାଲୁଥାଏ କଲ୍ୟାଣବୃତ୍ତି ତହବିଲ । ଅନ୍ୟ କାହାରି ଜମିଦାରୀରେ ମୁଁ ଏପରି ବ୍ୟବସ୍ଥା କେଉଁଠି ଦେଖି ନାହିଁ । ରବୀନ୍ଦ୍ରନାଥଙ୍କର ଏ ଏକ କୀର୍ତ୍ତି । ଏଇ ତହବିଲରେ ପ୍ରଜାମାନେ ଅର୍ଦ୍ଧେକ ଚାନ୍ଦା ଦିଅନ୍ତି, ବାକିଟା ଦିଅନ୍ତି ଜମିଦାର । ସରକାରୀ ସାହାଯ୍ୟ ନ ନେଇ ନିଜ ଅର୍ଥରେ ବିଦ୍ୟାଳୟ ଓ ଡାକ୍ତରଖାନା ଚଳାଇବା ପ୍ରଜା ଓ ଜମିଦାର ଉଭୟଙ୍କ ପକ୍ଷରେ ଗୌରବର ବିଷୟ ଥିଲା । କିନ୍ତୁ ମୂଳରେ ଯାହାଁ କହିଲି, ଝୋଟବଜାର ମାନ୍ଦା ପଡ଼ିଲା, ସେଇ ଦିନଠୁ ବିଦ୍ୟାଳୟ ଓ ଡାକ୍ତରଖାନାର ମଧ୍ୟ ମାନ୍ଦା ଅବସ୍ଥା ।

ଜମିଦାର ଓ ପ୍ରଜାର ପାରସ୍ପରିକ ସହଯୋଗିତା ଥିଲା ରବୀନ୍ଦ୍ରନାଥଙ୍କ ଆଦର୍ଶ । ପ୍ରଥମେ ସେ ଯେତେବେଳେ ଯୌବନରେ ମହର୍ଷିଙ୍କ ଆଦେଶରେ ଜମିଦାରୀ କାମ ଦେଖିବାକୁ ବାହାରିଲେ, ସେତେବେଳଠୁଁ ଏ ଆଦର୍ଶ ତାଙ୍କ ମନରେ ରହିଥିଲା । ଶିଲାଇଦାକୁ ଯାଇ ସେ ଲକ୍ଷ୍ୟ କଲେ ଯେ ତାଙ୍କ ପାଇଁ ଦରବାର ଅନୁଷ୍ଠିତ ହୋଇଛି । କିନ୍ତୁ ଦରବାରରେ ମୁସଲମାନମାନଙ୍କ ଆସନ ତଳେ ଫରାସ ଉପରେ, ଆଉ

ହିନ୍ଦୁମାନଙ୍କ ଆସନ ଚଉକି ବା ବେଞ୍ଚ ଉପରେ । ଏହା ଦେଖି ରବୀନ୍ଦ୍ରନାଥଙ୍କ ପିତ୍ତ ଜଳିଉଠିଲା । ସେ ଜାଣିବାକୁ ଚାହିଁଲେ, "ଏ ବୈଷମ୍ୟ କାହିଁକି ? ସମସ୍ତଙ୍କ ପାଇଁ ଏକପ୍ରକାର ବ୍ୟବସ୍ଥା ହୋଇ ନାହିଁ କାହିଁକି ?"

ଏହାର ଉତ୍ତରରେ ଶୁଣିବାକୁ ପାଇଲେ—"ଏହା ତ ବରାବର ଚାଲି ଆସିଛି, ମହାଶୟ ! ପ୍ରିନ୍ସଙ୍କ (ଦ୍ୱାରକାନାଥ ଠାକୁର) ଅମଳରେ ଏଇ ରକମ ବ୍ୟବସ୍ଥା ଥିଲା, ମହର୍ଷିଙ୍କ (ଦେବେନ୍ଦ୍ରନାଥ ଠାକୁର) ଅମଳରେ ବି ଏଇଆ ଥିଲା । ହଜୁର କ'ଣ ଏଇ ପ୍ରାଚୀନ ବ୍ୟବସ୍ଥା ରଦ୍ଦ କରିବାକୁ ଚାହୁଁଛନ୍ତି ? ତାହାହେଲେ ସେ ଶାସନ ଚାଲିବ ନାହିଁ ।"

ରବୀନ୍ଦ୍ରନାଥ ଜଣାଇଦେଲେ ଯେ, ଏପରି ଦରବାରରେ ସେ ଯୋଗ ଦେବେ ନାହିଁ । ସମସ୍ତଙ୍କୁ ସମାନ ଶ୍ରଦ୍ଧା ଦେଖାଇବାକୁ ହେବ । ଶେଷରେ ତାହା ହିଁ ହେଲା । ତାଙ୍କ ମୁସଲମାନ ପ୍ରଜାଗୁଡ଼ିକ ସେହି ଦିନଠୁ ତାଙ୍କର ବିଶେଷ ଅନୁଗତ । ଏ ଘଟଣା ହେଲା ଶିଲାଇଦାରେ, ମୋ ର ଜନ୍ମ ପୂର୍ବର ଘଟଣା । ମୁଁ ଏହା ଶିଲାଇଦାର ଏକ ଜମିଦାରୀ କର୍ମଚାରୀର ଗ୍ରନ୍ଥରୁ ପଢ଼ିଛି । କିନ୍ତୁ ଏହା ପରେ ଯେଉଁ କଥା କହୁଛି, ତାହା ମୋର ସ୍ୱଚକ୍ଷୁରେ ଦେଖା କଥା ।

ରାଜସାହିରେ ଥିବାବେଳେ ହଠାତ୍ ଟେଲିଗ୍ରାମ ପାଇଲି—ରବୀନ୍ଦ୍ରନାଥ ପଦ୍ମସରକୁ ଆସିଛନ୍ତି, ମୁଁ ଯେପରି ତାଙ୍କ ସଙ୍ଗରେ ଦେଖାକରେ । ସେ ସେହି ଦିନ କଲିକତା ଫେରିଯିବେ । ସମୟ ତ ମୋଟେ ନ ଥିଲା । ମୋଟର ଧରି ଛୁଟିଲି ନାଟୋର, ତା ପରେ ଟ୍ରେନରେ ଆସିଲି ଘାଟ । ଟ୍ରେନରୁ ଓହ୍ଲାଇ ଦେଖିଲି, ରବୀନ୍ଦ୍ରନାଥଙ୍କର ହାଉସବୋଟ ଘାଟରେ ବନ୍ଧା-ହୋଇଛି । ସେ ପଦ୍ମସରରୁ ଫେରି ଆସିଛନ୍ତି । ପ୍ଲାଟଫର୍ମରେ ଟ୍ରେନର ପ୍ରତୀକ୍ଷାରେ ବସିଛନ୍ତି । ମୁଁ ପ୍ରଣାମ କରି ତାଙ୍କ ପାଖରେ ବସିପଡ଼ିଲି ।

ରବୀନ୍ଦ୍ରନାଥ କହିଲେ, "ସେ ଲୋକମାନଙ୍କୁ ଦେଖୁଛ ? ସେମାନେ ଏତେ ବାଟ ଚାଲି ଚାଲି ମୋ ସାଙ୍ଗରେ ଦେଖା କରିବାକୁ ଆସିଛନ୍ତି । ପଦ୍ମସରକୁ ଏ ସମୟରେ ଆସିବାର କଥା ନ ଥିଲା । ସେମାନେ ହିଁ ମୋତେ ଶେଷ ଦେଖା କରିବେ ବୋଲି ଚାହିଁଲେ । ଅନେକ ଦିନ ହେଲା ଦେଖି ନ ଥିଲେ ତ ।"

ତା' ତ ରହିବେ ନିଶ୍ଚୟ । ଦୁନିଆ ସାରା ଲୋକ ଦେଖିଲେ, ଆଉ ଦେଖିବାକୁ ପାଇଲେ ନାହିଁ ଏମାନେ । କବି ବୋଧହୁଏ ପନ୍ଦର ବର୍ଷ ହେଲା ସ୍ୱାଡ଼ିକୁ ମୁହଁ ଫେରାଇ ନ ଥିଲେ । ତାଙ୍କ ବୟସ ସେତେବେଳକୁ ଛଅସ୍ତରୀ । ସ୍ୱାସ୍ଥ୍ୟ ମଧ୍ୟ ଭାଙ୍ଗିପଡ଼ିଛି । ପଦ୍ମସରକୁ ଯାଇ ଆସିବା କିଛି ସାମାନ୍ୟ କଥା ନୁହେଁ । ତାଙ୍କର ସେ ହାଉସବୋଟର ଅନ୍ତିମଦଶା ଘନେଇ ଆସୁଥିଲା । ବୋଧହୁଏ ଆଉ ଭଲ ଚଳାଚଳ ହେଉ ନ ଥିଲା ।

"ସେମାନେ କ'ଣ କହୁଛନ୍ତି, ଶୁଣିବ ?" ରବୀନ୍ଦ୍ରନାଥ କହିବାକୁ ଲାଗିଲେ, "କହୁଛନ୍ତି, ପୟଗମ୍ବରଙ୍କୁ ତ ସ୍ୱଚକ୍ଷୁରେ ଦେଖି ନାହୁଁ, ଆପଣଙ୍କୁ ହିଁ ଦେଖୁଛୁ ।"

ପଯୁଗମ୍ବରଙ୍କୁ ମୁଁ ବା କେଉଁ ସ୍ୱଚକ୍ଷୁରେ ଦେଖିଛୁ ! କିନ୍ତୁ ଗୁରୁଦେବ ତାଙ୍କର ସେ ଧଳପକ୍ୱ କେଶ, ଶ୍ମଶ୍ରୁମଣ୍ଡିତ ପରିଣତ ବୟସରେ ଠିକ୍ ଏକ ପଯୁଗମ୍ବର ଭଳି ଦିଶୁଥିଲେ । ମର୍ତ୍ତ୍ୟର ବନ୍ଧନ ଛସ୍ନ ହୋଇ ଅସୁଥିଲା । ସେ ଆମ୍ଭମାନଙ୍କ ମଧ୍ୟରେ ଥିଲେ ମଧ୍ୟ ଆମ ଭିତରେ ଜଣେ ହୋଇ ଆଉ ନ ଥିଲେ ।

ଏତେ ଏତେ ଦାଢ଼ିବାଲା ବୁଢ଼ା ବୁଢ଼ା ମୁସଲମାନମାନେ ତାଙ୍କୁ ଶିଷ୍ୟଜନ ପରି ଘେରି କରି ରହିଥାନ୍ତି । କଲିକତାଗାମୀ ଟ୍ରେନ ଆସିଲା । ଏକ ମିନିଟ କି ଦି ମିନିଟ ଠିଆହେଲା । ଗୁରୁଦେବଙ୍କୁ ଧରାଧରି କରି ଉପରେ ବସାଗଲା । ପ୍ରଜାମାନଙ୍କ ଆଖି ଛଳଛଳ । ଶେଷ ଥର ପାଇଁ କିଏ ସଲାମ, କିଏ ପ୍ରଣାମ କଲେ । ସେ ତ କେବଳ ଜମିଦାର ନୁହନ୍ତି, ସେ ପଯୁଗମ୍ବରଙ୍କ ସମାସ୍ୱନ୍ଦ ବ୍ୟକ୍ତି ।

ସେଥର ମୁଁ ତାଙ୍କର ଏକମାତ୍ର ସହଯାତ୍ରୀ ହୋଇ ନାଟୋର ପର୍ଯ୍ୟନ୍ତ ଆସିଲି । ପ୍ରଧାନତଃ ସାହିତ୍ୟ ନେଇ ଆଲୋଚନା ହେଲା । କିନ୍ତୁ ସେ ମତେ ସେଥିପାଇଁ ଡକାଇ ନ ଥିଲେ । ଗୋଟିଏ ବୈଷୟିକ ଅନୁରୋଧ ଥିଲା । ନାଟୋରରେ ଟ୍ରେନରୁ ଓହ୍ଲାଇ ତାଙ୍କୁ ବିଦାୟ ଦେଇ ରାଜସାହି ଫେରିବା ମାତ୍ରେ ହିଁ ମୋର ବୃଦ୍ଧ ମୁସଲମାନ ଜମାଦାର ମତେ ଧରିଲା—"ହଜୁର ବାହାଦୁରଙ୍କ ଯାତ୍ରା କେଉଁଠିକି ହୋଇଥିଲା ?"

ମୁଁ କହିଲି । ମୋତେ ଜଣା ନ ଥିଲା ଯେ ସେ ରବୀନ୍ଦ୍ରନାଥ ଠାକୁରଙ୍କୁ ଚିହ୍ନିବ ।

ଏ ଲୋକଟି କଲେକ୍ଟରମାନଙ୍କ ପାଖରେ ଯୁବକ ବୟସରୁ ଚପରାଶିଗିରି କରିଆସୁଛି । ସରକାରୀ ଆଇନ ତା ପାଇଁ କିଛି ନୁହେଁ । ତା' ବୟସର ଆଉସବୁ କେବେଠାରୁ ଅବସର ନେଇ ଭୂତ ହୋଇଗଲେଣି । ତାକୁ ତଡ଼ିବାକୁ କୌଣସି କଲେକ୍ଟରର ସାହସ ହେଉ ନାହିଁ । ମୁଁ ତ ନାତିର ବୟସୀ । ସେ ଯେ ଦୟାକରି ବଞ୍ଚିରହିଛି, ତାହା ହିଁ ମୋର ସମ୍ମାନ ।

ସଫି ଜମାଦାର ତିରସ୍କାରସୂଚକ ସ୍ୱରରେ କହିଲା—"କ'ଣ ହେଲା ହଜୁର ! ଠାକୁରବାବୁ ଆସିଥିଲେ ? ଅନେକ ଦିନ ହେଲା ତାଙ୍କୁ ଦେଖି ନ ଥିଲି । ଟିକେ ଦେଖିଆନ୍ତି ।"

"ତୁମେ ତାଙ୍କୁ ଦେଖିଛ ?"

ମୁଁ କୌତୂହଳୀ ହୋଇ ଜାଣିବାକୁ ଚାହିଁଲି, "କେବେ ?"

"ସେଇ ଯେଉଁ ଥର ସେ ରାଜସାହିକୁ ଆସିଥିଲେ । ପାଲିତ୍ ସାହେବ ସେତେବେଳେ ଏଠିକାର ଜଜ୍ ସାହେବ । ତାଙ୍କ କୋଠିରେ ରହିଲେ । ଆହା ! ଠାକୁରବାବୁ କି ସୁନ୍ଦର ମଣିଷ ! କି ସୁନ୍ଦର ଗୀତ ଗାଆନ୍ତି । ମୋର ଏବେ ବି ମନେ ଅଛି ।" ତା'ର ମନ ଚାଲିଗଲା କେଉଁ ଦୂର ଅତୀତକୁ । ମୁଁ ହିସାବ କରି ଦେଖିଲି ସେ କହୁଛି ଚାଳିଶ ବର୍ଷର କଥା, କବିଙ୍କ ବୟସ ସେତେବେଳେ ବତିଶ । ପଦ୍ମା ନଈରେ ହାଉସବୋଟରେ ରହୁଥିଲେ । ପରେ ପରେ ଶାନ୍ତିନିକେତନ ଆସି

ଗୁରୁଦେବଙ୍କୁ ମୁଁ ଏକଥା କହିଲି । ସେ ସକରୁଣ ଭାବେ କହିଲେ, "ସେତେବେଳେ ମୋର ଗୀତ ଗାଇବା ଭଲ ଗଲା ଥିଲା ।"

ଆଉ ଥରେ ପତିସରକୁ ଯାଉ ଯାଉ ବାଟରେ ଗୋଟାଏ ଜାଗାରେ ହାତ ପାଣି ପିଇବ ବୋଲି ମୁଁ ଓହ୍ଲାଇଥିଲି । ଯୋଗକୁ ସେତେବେଳେ ଜଣେ ଗ୍ରାମ୍ୟ ଗୃହସ୍ଥ ସାଙ୍ଗରେ ସେଠି ଆଳାପ ହେଲା । ସେ ଠାକୁର ବାବୁଙ୍କର ହିନ୍ଦୁପ୍ରଜା । ତା ମନକୁ ସେ ତା'ର ପିଲବେଳର କଥା କହିବାକୁ ଲାଗିଲା । ବାବୁ ମହାଶୟ ଥରେ ପତିସର ଆସିଲେ । ବୋଟରୁ ଓହ୍ଲେଇଲେ ନାହିଁ । ପ୍ରଜାମାନେ ସେଇଠିକି ଯାଇ ତାଙ୍କୁ ଭେଟି ଦେଇ ଆସିଲେ । ସେତେବେଳେ ତାଙ୍କର ପିତୃବିୟୋଗ ହୋଇଥାଏ । ଶ୍ରାଦ୍ଧ ଲଗି ଭେଟି ଦିଆଗଲା । ପ୍ରଥମ ଦିନ ସେ ଗ୍ରହଣ କଲେ । କିଛି କହିଲେ ନାହିଁ । ତା' ପରଦିନ ପୁଣି ସମସ୍ତଙ୍କୁ ଡକେଇ ପଠେଇଲେ । କହିଲେ, "ମୋ ବାପର ଶ୍ରାଦ୍ଧ । ମୁଁ ନେବ ତୁମଠାରୁ ଭେଟି ? ଛି ଛି, କି ଲଜ୍ଜାର କଥା ! ଯା ଯା, ସବୁ ଫେରେଇ ନେଇ ଯା ।" ସବୁ ଫେରେଇଦେଲେ । ପ୍ରଜାମାନେ ହତଭମ୍ବ । ଏମିତି ଜମିଦାର କେଉଁ ଜନ୍ମରେ ଦେଖା ଦେଇ ନ ଥିଲେ ।

ପତିସରଠାରୁ ଶିଲଇଦା ମତେ ବେଶି ଭଲ ଲାଗିଥିଲା । ଠାକୁରବାବୁମାନଙ୍କ ପଇତ୍ୟକ କୋଠିରେ ମୁଁ କେତେ ରାତି କଟାଇଛି । ଉପରତାଲା ଉପରେ ଗୋଟିଏ ଘର ଦେଖେଇ ସେମାନେ କହନ୍ତି—"ବାବୁ ମହାଶୟ ଏଇଠି ବସି ଗୀତାଞ୍ଜଳି ଲେଖିଥିଲେ ।" ଅନେକ କଥା ସେଠି ଶୁଣିବାକୁ ମିଳିଲା । ଯଦିଓ ସେତେବେଳେ ସେ ସେଠିକାର ଜମିଦାର ନ ଥିଲେ, ତଥାପି ତାଙ୍କୁ କେହି ଭୁଲିଯାଇ ନ ଥିଲେ । ତାଙ୍କ ସ୍ଥାନ ଆଉ କାହାକୁ ଦେଇ ନ ଥିଲେ । ସେତେବେଳେ ସେ ସେଠାକାର ପ୍ରିୟତମ ପ୍ରଭୁ ।

ଜମିଦାରୀ କଚେରୀରେ କିଛି କିଛି ପୁରୁଣା କାଗଜ ପତ୍ର ଥିଲା । ଗୁରୁଦେବଙ୍କ ହାତଲେଖା ଜମିଦାରୀ ହୁକୁମ ଦେଖିବାକୁ ମନକଲି । ଖଣ୍ଡେ ଦି ଖଣ୍ଡ ଏଠି ସେମାନେ ମୋତେ ଦେଖାଇଲେ । ପଢ଼ି ଦେଖିଲି, ରବୀନ୍ଦ୍ରନାଥଙ୍କ ଆଉ ଏକ ରୂପ । କିଏ କହିବ ସେ ଜଣେ କବି । ଉପମାବହୁଳ ଅଳଙ୍କୃତ ଗଦ୍ୟ ନୁହେଁ, ବେଶ୍ ଖାଣ୍ଟି ମିଜାଜରେ ଲେଖା ନୀରସ ନିରାଭରଣ ବୈଷୟିକ ଲିପି ।

ପୁତ୍ର ରଥୀନ୍ଦ୍ରନାଥଙ୍କୁ କୃଷିବିଦ୍ୟା ଶିକ୍ଷା କରିବା ପାଇଁ ସେ ଆମେରିକା ପଠାଇଥିଲେ । ସେ ଚାହିଁଥିଲେ ତା'ପରେ ଶିଲଇଦା ପାଖରେ ତରକାରି କରି ତାଙ୍କ ପାଇଁ ଗୋଟିଏ ଫାର୍ମ କରିଦେବେ । ଏହା ନୋବେଲ ପ୍ରାଇଜ ପାଇବାର ପୂର୍ବ ପର୍ଯ୍ୟାୟର କଥା । ବିଶଦ ଉପଦେଶ ଥିଲା ଜମିଦାରୀ କର୍ମଚାରୀଙ୍କି ପତ୍ର । ଯେଉଁ ଭାଷାରେ ଲେଖା ହୋଇଥିଲା, ତା' ମଧ୍ୟ ଜମିଦାରୀ ସିରସ୍ତାର ବଙ୍ଗଳା । ଆରମ୍ଭଟା ସଂସ୍କୃତ ସମ୍ବୋଧନଦ୍ୱାରା ହୋଇଥିଲା । ଆହା, କାହିଁକି ସେତେବେଳେ ନକଲ କରି ନ ରଖିଲି !

“ନା, କାବ୍ୟ ପଢ଼ି ଯେମିତି ଭାବ କର ସେମିତି ବୁଝନ୍ତୁ ।” ସେଇ ଶିଲାଇଦାରେ ତାଙ୍କର ପରୀକ୍ଷା ନିରୀକ୍ଷାର ଖବର ମଧ୍ୟ ମିଳିଲା । କବିତାର ଟେକ୍‌ନିକ୍ ବିଷୟକ ଖବର ନୁହେଁ । କେତେ ମହଣ ଇଲିଶ ମାଛ ଯୋଗାଡ଼ କରି ମାଟିରେ ପୋତି ଦେଇଥିଲେ । ଜମି ସାରବାନ ହେବ । ଗନ୍ଧରେ ମଣିଷ ପାଗଳ ହୋଇଗଲେ ।

କୁଷ୍ଟିଆରେ ଥିବାବେଳେ ତାଙ୍କ ଯୌଥ କାରବାରର ଏକମାତ୍ର ସ୍ମରଣଚିହ୍ନ ନଜରରେ ପଡ଼ିଥିଲା । ଗୋଟିଏ ଘରର କାନ୍ଥରେ ଲେଖାଥିଲା, “ଟାଗୋର ଏଣ୍ଡ କୋଃ ।” ତା’ପରେ ତାଙ୍କ ବୃତ୍ତି ବଦଳିଗଲା । ନିଜେ କାରବାର ବନ୍ଦ କରି ଦେଇ ଶାନ୍ତିନିକେତନ ଚାଲି ଆସିଥିଲେ । ତାଙ୍କ ଶକ୍ତିର ବା ବୁଦ୍ଧିର ଅଭାବ ନ ଥିଲା । ବିଶ୍ୱାସଯୋଗ୍ୟ କର୍ମଚାରୀର ହିଁ ଅଭାବ । ନ ହେଲେ ତାଙ୍କ ଏକ ବିରାଟ ଋଣଦାୟରେ ପଡ଼ି ଶିଲାଇଦାର କର୍ମସ୍ଥଳ ଛାଡ଼ି ଶାନ୍ତିନିକେତନର ତପୋବନରେ ରହିବାକୁ ହୋଇ ନ ଥାନ୍ତା ବା ମାତ୍ର ଚାଳିଶ ବର୍ଷ ବୟସରେ ବାନପ୍ରସ୍ଥ କରିବାକୁ ପଡ଼ି ନ ଥାନ୍ତା ।

ତାଙ୍କର ଇଚ୍ଛା ଥିଲା ତାଙ୍କ ପୁତ୍ର ତାଙ୍କର କର୍ମସ୍ଥଳରେ ବସି ତାଙ୍କରି କର୍ମଧାରା ଅନୁସରଣ କରିବେ । ତା’ ବା କେଉଁଠି ଘଟିଲା ? ନୋବେଲ୍ ପ୍ରାଇଜ ପରେ ସବୁ ଓଲଟ ପାଲଟ ହୋଇଗଲା । ଏମିତି କି ଜମିଦାରୀର ସଦର କାର୍ଯ୍ୟାଳୟ ପର୍ଯ୍ୟନ୍ତ ସ୍ଥାନାନ୍ତରିତ ହେଲା ଶାନ୍ତିନିକେତନକୁ । ରବୀନ୍ଦ୍ରନାଥଙ୍କ ଜମିଦାରୀ ଆଦର୍ଶର ପ୍ରଥମ କଥା ଥିଲା ଜମିଦାର ଅନୁପସ୍ଥିତ ଉପସ୍ୱତ୍ୱଭୋଗୀ ହେବା ଅନୁଚିତ । ଅମଲାମାନଙ୍କ ହାତରେ ପ୍ରଜାମାନଙ୍କୁ ଛାଡ଼ିଦେବା ଅନୁଚିତ । ଶେଷରେ ଅମଲାତନ୍ତ୍ରର ହିଁ ଜୟ ହେଲା ।

ରୁଷିଆ ବୁଲିବାକୁ ଯାଇ ସେ କହିଥିଲେ, ସେ ଯେ ଜମିଦାର ସେଥିପାଇଁ ସେ ଲଜ୍ଜିତ । ଟଲଷ୍ଟୟ ଯେପରି ସ୍ତ୍ରୀ ଉପରେ, ରବୀନ୍ଦ୍ରନାଥ ସେପରି ପୁତ୍ର ଉପରେ ଜମିଦାରୀ ଚଳାଇବା ଭାର ନ୍ୟସ୍ତ କରିଦେଇ ହାତ ପୋଛି ଦେଇଥିଲେ । କିନ୍ତୁ ଅମିୟ ଚକ୍ରବର୍ତ୍ତୀ ଯେତେବେଳେ ତାଙ୍କ ନିକଟରେ ନିବେଦନ କଲେ ଯେ ସେ ଯେପରି ଚାଲିଯିବା ଆଗରୁ ତାଙ୍କ ଜମିଦାରୀ ନେସନକୁ ଦେଇଯାନ୍ତୁ, ସେତେବେଳେ ସେ ନାରାଜ ହୋଇଥିଲେ । ପୁତ୍ରକୁ ସେ ବଞ୍ଚିତ କରି ନ ଥିଲେ !

କେତେ ବର୍ଷ ପରେ ବଞ୍ଚିତ କଲା ଇତିହାସ ।

# ବୁଦ୍ଧିଜୀବୀ ରବୀନ୍ଦ୍ରନାଥ

## ଅଧ୍ୟାପକ ନରେନ୍ଦ୍ରନାଥ ମିଶ୍ର, ପିଏଚ. ଡ଼.

ବିଶ୍ୱଭାରତୀ ଓଡ଼ିଆ ବିଭାଗ, ଶାନ୍ତିନିକେତନ

ଆଧୁନିକ ଯୁଗର ଜଣେ ବୁଦ୍ଧିଜୀବୀଙ୍କ ମାନସଲୋକର ପରିଚୟ ପାଇବାକୁ ହେଲେ କେତେଗୁଡ଼ିଏ ପ୍ରତିଷ୍ଠିତ ବୌଦ୍ଧିକ ପରମ୍ପରା ପ୍ରତି ଦୃଷ୍ଟି ଦେବାକୁ ହେବ। ବୈଜ୍ଞାନିକ ବୁଦ୍ଧିବାଦ, ଭାବବାଦୀ ଆଦର୍ଶବାଦ, ଯୁଗାନୁଗାମୀ ପରିବର୍ତ୍ତନ ଓ ଜନଶକ୍ତିର ମହତ୍ତ୍ୱରେ ବିଶ୍ୱାସ ଆଦି ଏଠାରେ ଉଲ୍ଲେଖଯୋଗ୍ୟ।

ବୈଜ୍ଞାନିକ ବୁଦ୍ଧିବାଦ ସକଳ ପରମ୍ପରାର ବିରୋଧୀ। ଅନୁଭୂତି, ତଥ୍ୟ ଓ ତାର ପରୀକ୍ଷା ଉପରେ ଏହାର ପୂର୍ଣ୍ଣ ଆସ୍ଥା। ପ୍ରକୃତି ଅଧ୍ୟୟନ ଏହାର ମନ୍ତ୍ର। ସ୍ୱେଚ୍ଛାଚାର ଓ ଅହେତୁକ କ୍ଷମତା ବିରୋଧରେ ଏହା ବିଦ୍ରୋହ ଘୋଷଣା କରେ। ଜ୍ଞାନପିପାସୁ ବ୍ୟକ୍ତି ଓ ଚରମ ବାସ୍ତବ ପ୍ରକୃତି ମଧ୍ୟରେ ଅହେତୁକ ଭାବରେ ଦଣ୍ଡାୟମାନ ସକଳ ପ୍ରକାର ପ୍ରତିବନ୍ଧକ ଦୂର କରିବାକୁ ଏହା ସର୍ବଦା ସଂଗ୍ରାମ କରେ। ବସ୍ତୁତଃ ଆଧୁନିକ ବୁଦ୍ଧିଜୀବୀ ସମାଜର ଅଭ୍ୟୁଦୟ ମୂଳରେ ଏହି ବୈଜ୍ଞାନିକ ବୁଦ୍ଧିବାଦୀ ଆଦର୍ଶ କାର୍ଯ୍ୟ କରିଅଛି। ରବୀନ୍ଦ୍ରନାଥ ସବୁବେଳେ ବୈଜ୍ଞାନିକ ବୁଦ୍ଧିବାଦର ସମର୍ଥନ କରିଅଛନ୍ତି। "ଆଧୁନିକ ଯୁଗ ସ୍ଫୀତ ମାଂସପେଶୀର ଯୁଗ ନୁହେଁ, ବିକଶିତ ବୁଦ୍ଧିର ଯୁଗ" ଏହିଭଳି ଉକ୍ତି ମଧ୍ୟରେ ବୈଜ୍ଞାନିକ ବୁଦ୍ଧିବାଦ ପ୍ରତି କବିଙ୍କ ପ୍ରାଣର ଗଭୀର ମମତା ସୂଚିତ ହୁଏ।

ଭାବବାଦୀ ଆଦର୍ଶବାଦ ପ୍ରକୃତରେ ବୈଜ୍ଞାନିକ ବୁଦ୍ଧିବାଦର ଅଭ୍ୟୁଦୟ ପଥ ସୃଷ୍ଟି କରିଅଛି। ଆପାତ ଦୃଷ୍ଟିରେ ଏହା ବୈଜ୍ଞାନିକ ବୁଦ୍ଧିବାଦର ବିରୋଧୀ ମନେ ହେଲେ ହେଁ ଉଭୟର ମୂଳସ୍ୱର ସମାନ। ମୌଳିକ ପ୍ରତିଭାର ବିକାଶ, ନୂତନ ସୃଷ୍ଟି ଓ ସ୍ୱତଃସ୍ଫୂର୍ତ୍ତି ଅଭ୍ୟୁତ୍ଥାନ ଏହାର ଲକ୍ଷ୍ୟ। ଜୀବନର ସ୍ୱଚ୍ଛନ୍ଦ ବିକାଶ ପଥରୁ ଏହା ସକଳ କଣ୍ଟକ ଦୂର କରିବାକୁ ଚାହେଁ। ସବୁ ପ୍ରକାର ସ୍ଥିର ଆଦର୍ଶ ଓ ଗତାନୁଗତିକ ପରମ୍ପରାର ଏହା ବିରୋଧୀ। ଅଭିଜାତ ପରିବାର, ସୋପାନବଦ୍ଧ ସମାଜ ଶୃଙ୍ଖଳା, ବଣିକ ବିପଣୀର ବିନିମୟ ଆଦର୍ଶ—ଏ ସମସ୍ତ ବିରୋଧରେ ରୋମାଣ୍ଟିକ ଆଦର୍ଶବାଦୀମାନେ ପୂର୍ଣ୍ଣପ୍ରାଣରେ ବିଦ୍ରୋହ ଘୋଷଣା କରିଥାନ୍ତି। ମୂଳ ପ୍ରକୃତି ଓ ଜ୍ଞାନପିପାସୁ ବ୍ୟକ୍ତି ମଧ୍ୟରେ କୌଣସି ବ୍ୟବଧାନ ଏମାନେ ସ୍ୱୀକାର

କରନ୍ତି ନାହିଁ । ତେବେ ଏମାନଙ୍କ ବିଶ୍ୱାସରେ ପ୍ରାକୃତିକ ଜ୍ଞାନ ଅନ୍ତରର ଆଲୋକରେ ପ୍ରକାଶିତ ହୁଏ । ଯେ ନିଜର ଅନ୍ତରକୁ ଆଲୋକରେ ଦେଖିପାରେ, ତାହାର ଦୃଷ୍ଟିରେ ପ୍ରକୃତିର ଗହନ ରହସ୍ୟଲୋକର ଦ୍ୱାର ଖୋଲିଯାଏ । ଏହି ଭାବରେ କବି ଗାଇଛନ୍ତି—

"ତୋମାର ଜ୍ୟୋତିଷ୍କ ତାରେ
ଯେ ପଥ ଦେଖାୟେ,
ସେ ଯେ ତାର ଅନ୍ତରେର ପଥ ।"

ସାଧାରଣ ମନୁଷ୍ୟ ବର୍ତ୍ତମାନକୁ ଅପରିବର୍ତ୍ତନୀୟ ମନେ କରେ; ମାତ୍ର ବୁଦ୍ଧିଜୀବୀ ସତତ ପରିବର୍ତ୍ତନରେ ବିଶ୍ୱାସୀ । ଅନ୍ଧକାରରୁ ଆଲୋକର ପଥରେ, ଅନ୍ଧ ଜ୍ଞାନରୁ ଶୁଦ୍ଧ ଜ୍ଞାନର ପଥରେ, ମିଥ୍ୟାରୁ ସତ୍ୟର ପଥରେ ମାନବର ନିରବଚ୍ଛିନ୍ନ ଯାତ୍ରାରେ ସେ ପୂର୍ଣ୍ଣ ଆସ୍ଥା ରଖେ । ପୃଥିବୀରେ ଯେତେ ପ୍ରକାର ଧର୍ମ ଓ ଆଦର୍ଶବାଦର ପ୍ରଚାର ହୋଇଅଛି, ସବୁ ମୂଳରେ ଏହିପରି ଏକ ବିଶ୍ୱାସ କାର୍ଯ୍ୟ କରିଅଛି । ଆପଣା ଯୁଗର ସବୁ ପ୍ରକାର ଦୁଃଖ, ଦୈନ୍ୟ, ଅଶାନ୍ତି ଓ ଅସନ୍ତୋଷ ସମ୍ମୁଖରେ ଏକ ଉଜ୍ଜ୍ୱଳ ବିଶ୍ୱାସ ଓ ଆଶା ଘେନି ଦଣ୍ଡାୟମାନ ହେବାକୁ ଏହି ଆଦର୍ଶ ମନୁଷ୍ୟଂକୁ ଶକ୍ତି ଦିଏ । ରବୀନ୍ଦ୍ରନାଥ କୌଣସି ଅବସ୍ଥାରେ ନୈରାଶ୍ୟ ପ୍ରକାଶ କରିନାହାନ୍ତି । ଚିର ପ୍ରତୀକ୍ଷମାଣ ତମିଶ୍ର ରାତି ଯେ ନିରନ୍ତର ଜ୍ୟୋତିର ଦୀକ୍ଷା ନେଉଥାଏ, ତାହା ସେ ଏକାନ୍ତ ଭାବେ ଅନୁଭବ କରିଛନ୍ତି । କାଲଧର୍ମକୁ ଅକୁଣ୍ଠ ଚିତ୍ତରେ କବି ସ୍ୱୀକାର କରିଛନ୍ତି—

"ସବ କିଛୁ ଚଲିଯ୍ୟାଛେ ନିରନ୍ତର ପରିବର୍ତ୍ତ ବେଗେ ସେଇ ତୋ କାଲେର ଧର୍ମ ।
ମୃତ୍ୟୁ ଦେଖା ଦେୟ ଏସେ ଏକାନ୍ତେ ଅପରିବର୍ତ୍ତନେ,
ଏଇ ବିଶ୍ୱେ ତାଇ ସେ ସତ୍ୟ ନହେ
ଏକଥା ନିଶ୍ଚିତ ମନେ ଜାନି ।"

(ଶେଷ ଲେଖା)

ଅଜ୍ଞ ବିଷୟୀ ମନୁଷ୍ୟ ମନେକରେ ଏକା ଏକା ଅଖଣ୍ଡ ଅଧିକାର ଭୋଗ କରିବ । ଧନ, କ୍ଷମତା ସମସ୍ତଙ୍କଠାରୁ କାଢ଼ିନେଇ ନିଜର ଭଣ୍ଡାରରେ ସାଇତି ରଖିବ । ମାତ୍ର ବୁଦ୍ଧିଜୀବୀ ବ୍ୟକ୍ତିଠାରୁ ତାର ବ୍ୟକ୍ତିତ୍ୱକୁ ବଡ଼ ମନେକରେ; ଯୋଦ୍ଧାଠାରୁ ତାର ଯୁଦ୍ଧବିଦ୍ୟାକୁ ବେଶୀ ସମ୍ମାନ ଦିଏ; ଜ୍ଞାନୀଠାରୁ ତାର ଜ୍ଞାନକୁ ବେଶୀ ଶ୍ରଦ୍ଧା କରେ । ସେ ଏକାନ୍ତ ଭାବରେ ଜ୍ଞାନର ଧର୍ମହିଁ ପାଳନ କରିବାକୁ ଚାହେଁ । ଜ୍ଞାନର ଧର୍ମ—ବିତରଣରେ ତାହା ବଢ଼େ; ବରଂ କମେ ନା । ଧନର ଧର୍ମ—ବିତରଣରେ ତାହା କମେ, କିନ୍ତୁ ବଢ଼େ ନା । ଧନତନ୍ତ୍ର ଚାହେଁ ସମସ୍ତଙ୍କୁ ବଞ୍ଚିତ କରି ଧନର ସଞ୍ଚୟ କରିବାକୁ; ମାତ୍ର ଜ୍ଞାନଜୀବୀ ଚାହେଁ ସମସ୍ତଙ୍କୁ ବିତରଣ କରି ଜ୍ଞାନର ବିକାଶ ସାଧନ କରିବାକୁ । ସମସ୍ତେ ଜ୍ଞାନଲାଭ କରନ୍ତୁ, ଏଇ ବିଶ୍ୱ ସବୁ ଆସେ ସମସ୍ତେ ସୁଖଲାଭ କରନ୍ତୁ । ଗଣତନ୍ତ୍ର ଓ ସାମ୍ୟବାଦର ଆଦର୍ଶ

ଏଇ ପ୍ରକାର ବୌଦ୍ଧିକ ବିକାଶଦ୍ୱାରା ସମ୍ଭବ ହୋଇଅଛି । "The meek shall inherit the earth"—ପ୍ରାଚୀନ ଧର୍ମଶାସ୍ତ୍ରର ଏ ବାଣୀ ମୂଳରେ ମନୁଷ୍ୟର ମୁକ୍ତ ବୁଦ୍ଧିର ସଂକେତ ବିଦ୍ୟମାନ । ନାମହୀନ ଅଗଣିତ ଜନସାଧାରଣଙ୍କ ଭିତରେ ମନୁଷ୍ୟର ପରମ ଆଦର୍ଶ ଓ ଚରମ ଶକ୍ତି ଲୁଚି ରହିଥିବାର ବିଶ୍ୱାସ ଜାତ ହୋଇଅଛି । ରବୀନ୍ଦ୍ରନାଥ ଭଗବାନଙ୍କର ଆସ୍ଥାନ ନିର୍ଦ୍ଦେଶ କରିଛନ୍ତି, —

"ସବାର ପିଛେ, ସବାର ନୀଚେ, ସବ୍ ହାରାଦେର ମାଝେ ।"

ପୁଣି ଅତି ମାତ୍ରାରେ ବୌଦ୍ଧିକତା ଜୀବନର ସହଜ ବିକାଶରେ ପ୍ରତିବନ୍ଧକ ହୁଏ । ଅତି ସଂସ୍କୃତ ସଭ୍ୟ ସମାଜକୁ ପ୍ରକୃତି ବର୍ବରଙ୍କ ହାତରେ ଶାସ୍ତି ଦିଏ । କାଳେ କାଳେ ଇତିହାସରେ ଏହା ହିଁ ଦେଖାଦେଇଅଛି । ତେଣୁ ଜୀବନରେ ଯେପରି ବିକଶିତ ବୁଦ୍ଧିର ସ୍ଥାନ ଅଛି, ସେଇପରି ସହଜ ବିଶ୍ୱାସ, ପ୍ରାକୃତିକ ଜୀବନକ୍ରିୟାର ସ୍ଥାନ ଅଛି । ବୁଦ୍ଧିଧର୍ମ ଓ ଜୀବଧର୍ମ ପରସ୍ପରର ବିରୋଧୀ ନୁହେ । ଏ ଉଭୟେ ପରସ୍ପରର ପରିପୂରକ ହେଲେ ହିଁ ବିକାଶର ପଥ ସହଜ ହୁଏ । ବଙ୍ଗ ଦେଶର ପଲ୍ଲୀ-ସଂସ୍କୃତିର ପ୍ରତୀକ ଏକତାରା ହସ୍ତ ବାଉଲ ଏହି ସହଜ ଜ୍ଞାନର ଉପାସକ । ଏହି ବାଉଲର କଣ୍ଠ ରବୀନ୍ଦ୍ରନାଥଙ୍କ ସମସ୍ତ ସଙ୍ଗୀତରେ ପ୍ରତିଧ୍ୱନିତ । କାରଣ ସହଜ ବିଶ୍ୱାସରେ ସେ ନିଜର ଅନ୍ତରକୁ ଉଜ୍ଜ୍ୱଳ କରେ—

"ସହଜ ବିଶ୍ୱାସେ ଯେ ଯେ କରେ ତାରେ ଚିର ସମୁଜ୍ଜ୍ୱଳ ।"

ରବୀନ୍ଦ୍ରନାଥ ଏକ ଦିଗରେ ଯେପରି ଆଧୁନିକ ବୁଦ୍ଧିଜୀବୀ, ଅନ୍ୟ ଦିଗରେ ସେଇପରି ପ୍ରାଚୀନ ଋଷି । ଆଧୁନିକ ବାସ୍ତବ ଜ୍ଞାନ ଓ ପ୍ରାଚୀନର ସତ୍ୟ ଦୃଷ୍ଟି, ଆଧୁନିକ କର୍ମକୁଶଳତା ଓ ପ୍ରାଚୀନ ସୌନ୍ଦର୍ଯ୍ୟବୋଧ, ଆଧୁନିକ ଭାବବିସ୍ତୃତି ଓ ପ୍ରାଚୀନ ଗଭୀର ହୃଦୟାନୁଭୂତିର ସମ୍ମିଶ୍ରଣ ତାଙ୍କଠାରେ ଘଟିଥିଲା । ପ୍ରାଚୀନ ଭାରତର ତପୋବନ ସଭ୍ୟତା ଓ ଆଧୁନିକ ଯୁଗର ନଗର-ଜୀବନ ଉଭୟର ଏକ ସମନ୍ୱୟ ସାଧନ ତାଙ୍କ ଜୀବନର ବ୍ରତ ଥିଲା ।

ଆଧୁନିକ ବୁଦ୍ଧିଜୀବୀଙ୍କ ବିରୋଧରେ ଏକ ପ୍ରଧାନ ଅଭିଯୋଗ ହେଉଛି— ସେମାନେ ଭାବପ୍ରଧାନ, କଳ୍ପନାପ୍ରବଣ ବ୍ୟକ୍ତି; କର୍ମବିମୁଖ, ନିଷ୍କ୍ରିୟ । ରୁଗ୍ଣମନ ଓ ରୁଗ୍ଣଦେହ—ଏହି ବୁଦ୍ଧିଜୀବୀମାନେ ଏକ ସୁସ୍ଥ ସମାଜଗଠନର ଅନ୍ତରାୟ । ଏହାର ଉତ୍ତର ରବୀନ୍ଦ୍ରନାଥ ନିଜେ ଦେଇଛନ୍ତି । କୌଣସି ବିଷୟରେ କେବଳ ନିଷ୍କ୍ରିୟ ଚିନ୍ତା ପ୍ରକାଶ ନ କରି, ପଲ୍ଲୀ-ସଂଗଠନଠାରୁ ବିଶ୍ୱଭାରତୀ ଗଠନ ପର୍ଯ୍ୟନ୍ତ ନିଜର ସମସ୍ତ କଳ୍ପନାକୁ ବାସ୍ତବ ରୂପ ଦେବାକୁ ଏକନିଷ୍ଠ ସାଧନା କରିଯାଇଅଛନ୍ତି ।

ବିଶ୍ୱତତ୍ତ୍ୱ, ଚରିତ-ନୀତି, ସାମାଜିକ ନ୍ୟାୟ ସବୁ ଦିଗରେ କବି ସତ୍ୟର ଆବାହନ କରିଅଛନ୍ତି । ଏ ଦିଗରେ ପ୍ରାଚୀନ ଭାରତକୁ ଆଧୁନିକ ଇଉରୋପର ଦାନ ସେ ଅକୁଣ୍ଠ ଚିତ୍ତରେ ସ୍ୱୀକାର କରିଛନ୍ତି । ଜଗତ ନିତ୍ୟ ପରିବର୍ତ୍ତନଶୀଳ । ଏହି ପରିବର୍ତ୍ତନର ଧାରା ଓ ଗତିବେଗକୁ ଯଥାର୍ଥରୂପେ ହୃଦୟଙ୍ଗମ କରିବା ପ୍ରଗତିଶୀଳର

କର୍ତ୍ତବ୍ୟ । ଭାରତର ସୃଷ୍ଟିର ଭୂମିରେ ଆଧୁନିକ ଇଉରୋପର ଅଗ୍ନିର ବେଗର ଆଘାତ କେପର ନୂତନ ସର୍ଜନା ଶକ୍ତି ସୃଷ୍ଟି କରିଛି, ତାହା କବି ବେଶ ବୁଝିପାରିଥିଲେ । ତାଙ୍କର ଉକ୍ତିରେ "ୟୁରୋପୀୟ ଚିତ୍ତର ଜଙ୍ଗମ ଶକ୍ତି ଆମର ସ୍ଥାବର ମନ ଉପରେ ଆଘାତ କଲା ଯେପରି ଦୂର ଆକାଶରୁ ଆଘାତ କରେ ବୃଷ୍ଟିଧାରା ମାଟି ଉପରେ, ଭୂମିତଳର ନିଶ୍ଚେଷ୍ଟ ଅଙ୍କୁର ମଧ୍ୟରେ ପ୍ରବେଶ କରି ପ୍ରାଣରେ ଚେଷ୍ଟା ସଂଚାର କରାଏ । ସେହି ଚେଷ୍ଟା ବିଚିତ୍ର ରୂପେ ଅଙ୍କୁରିତ ଓ ବିକଶିତ ହୋଇ ଚାଲିଯାଏ । (କାଳାନ୍ତର ପୃ:୫) ।" ୟୁରୋପରୁ ଜ୍ଞାନ ଦିଗରେ ମୋହମୁକ୍ତ ବୁଦ୍ଧିର ଶ୍ରଦ୍ଧା ଓ ବ୍ୟବହାର କ୍ଷେତ୍ରରେ ନ୍ୟାୟସଙ୍ଗତ ଅଧିକାରର ସ୍ୱୀକୃତି ବିଧି ଆଚାର-ପୀଡ଼ିତ, ଅହେତୁକ ପରମ୍ପରାବଦ୍ଧ ଭାରତବର୍ଷର ଯେ ଏକାନ୍ତ ଶିକ୍ଷଣୀୟ, ଏହା ରବୀନ୍ଦ୍ରନାଥ ମୁକ୍ତ କଣ୍ଠରେ ପ୍ରଚାର କରି ଯାଇଛନ୍ତି ।

ସାଧାରଣ ମନୁଷ୍ୟ ସହଜ ପଥର ପଥିକ । ଯାହା ଅନାୟାସଲଭ୍ୟ, ତାହା ପାଇବାକୁ ସେ ଲାଳାୟିତ । ଏହି ଭୂମିକାରେ ଆତ୍ମପ୍ରକାଶ କରିଛି ଭାରତୀୟ ସମାଜରେ ଜାତିଭେଦ, ଭାରତୀୟ ରାଜନୀତିରେ ସାଂପ୍ରଦାୟିକତା । ଭାରତୀୟ ଜୀବନାଦର୍ଶରେ ତ୍ୟାଗଧର୍ମ, ସଂସାରବିମୁଖତା ଓ ବୈରାଗ୍ୟମୁକ୍ତ ଭାବନା ଏ ସମସ୍ତ ମୂଳରେ ଏକ ପ୍ରକାର ଶିଶୁସୁଲଭ ସହଜଲଭ୍ୟ ପ୍ରତି ଆଗ୍ରହ ବିଦ୍ୟମାନ; ମାତ୍ର ଯାହା ସହଜ-ଲଭ୍ୟ, ଯାହା ଅନାୟାସରେ ସାଧନଯୋଗ୍ୟ, ତାହା ଯଥାର୍ଥ ନୁହେ । ରବୀନ୍ଦ୍ରନାଥଙ୍କ ଭାଷାରେ କହିଲେ—"ସହଜର ଡାକ ମନୁଷ୍ୟର ନୁହେ, ସହଜର ଡାକ ମଧୁ-ମାଛିର । ମନୁଷ୍ୟଠାରେ ତାର ଚୂଡ଼ାନ୍ତ ଶକ୍ତିର ଦାବି କଲେ, ସେ ଆତ୍ମପ୍ରକାଶର ଐଶ୍ୱରିକ ଶକ୍ତି ଉଦ୍‌ଘାଟିତ କରିପାରେ ।"

ଊନବିଂଶ ଶତାବ୍ଦୀର ଶେଷ ପାଦରେ ଭାରତୀୟ ବୁଦ୍ଧିଜୀବୀଙ୍କ ପ୍ରାଣରେ ଏକପ୍ରକାର ନିଶ୍ଚେଷ୍ଟ ନିର୍ବେଦ ଭାବ ଦେଖା ଯାଇଥିଲା । ତରୁଣ ବୁଦ୍ଧିଜୀବୀ ସମାଜର ସ୍ୱପ୍ନ ଭାରତୀୟ ବାସ୍ତବତାର କଠୋର ଶିଳାରେ ଆଘାତ ପାଇ ଭାଜି ପଡ଼ୁଥିଲା । ପାଶ୍ଚାତ୍ୟ ଶିକ୍ଷା ଓ ଜୀବନାଦର୍ଶର ଯେଉଁ ପ୍ରଭାବ ଏମାନେ ନିଜ ଅନ୍ତରରେ ବହନ କରୁଥିଲେ, ନିଜ ସମାଜର ପରିପ୍ରେକ୍ଷିରେ ତାକୁ କ୍ରିୟାବନ୍ତ କରିବା ସମ୍ଭବ ନ ଥିଲା । ସେମାନେ ଗ୍ରାମର ରୁଦ୍ଧ ଜଳବାୟୁରେ ଅଣନିଶ୍ୱାସୀ ହୋଇ ଅଳ୍ପ କେତୋଟି ସହରରେ ଠୁଳ ହେଉଥିଲେ । ଅଧିକାଂଶ ଇଂରେଜ ଗଢ଼ା ଶାସନ କେନ୍ଦ୍ରିକ ନଗର । ସେଠି ଗତାନୁଗତିକ ନୌକରଶାହୀ ଜୀବନ । ନା ଅଛି ଗତି, ନା ଅଛି ସ୍ୱପ୍ନ ! ଆଧୁନିକ ମନୁଷ୍ୟ ଶକ୍ତିଧର । ଶକ୍ତି ତାର ଯନ୍ତ୍ର. ଶକ୍ତି ତାର ବୁଦ୍ଧି । ମାତ୍ର ଭାରତୀୟ ବୁଦ୍ଧିଜୀବୀଙ୍କଠାରେ ଯନ୍ତ୍ରଶକ୍ତି ନ ଥିଲା; ବୁଦ୍ଧିପ୍ରୟୋଗର କ୍ଷେତ୍ର ଥିଲା ଏକାନ୍ତ ସଂକୁଚିତ । ଏଇ ପରିବେଶରେ ଧାର୍ମିକ ଅଭ୍ୟୁତ୍‌ଥାନର ନେତାମାନେ ନବୋଦ୍ୟମର ସୂତ୍ରପାତ କରିଥିଲେ । ସମାଜ ସଂସ୍କାର, ପୌତ୍ତଳିକ ଅନ୍ଧଧର୍ମର ଉଚ୍ଛେଦ, ଅଶିକ୍ଷାର ବିମୋଚନ ଆଦି ବହୁ ଦିଗରେ ସେମାନେ କାର୍ଯ୍ୟ କରିଥିଲେ । ଏଥିକରେ

ବୁଦ୍ଧିଜୀବୀମାନେ ସନ୍ତୁଷ୍ଟ ନ ଥିଲେ । ଆତ୍ମସଂଗଠନ ସଙ୍ଗେ ସଙ୍ଗେ ଆତ୍ମ ଅଧିକାର ଓ ଆତ୍ମଶକ୍ତି ଲାଭ ଲାଗି ସେମାନେ ଉଦ୍ୟମ କଲେ । ବିଂଶ ଶତକର ଆଦ୍ୟ ପାଦର ରାଜନୈତିକ ନେତାମାନେ ଥିଲେ ଏ ଦିଗରେ ଅଗ୍ରଣୀ । ସ୍ୱଦେଶୀ ଆନ୍ଦୋଳନ ଯୁଗରେ ରବୀନ୍ଦ୍ରନାଥ ଏମାନଙ୍କର ଖୁବ ନିକଟବର୍ତ୍ତୀ ଥିଲେ । କ୍ରମଶଃ ସେ ବୁଝି-ପାରିଲେ, ଏମାନଙ୍କର ଦୃଷ୍ଟି ମଧ୍ୟ ସୀମିତ ବର୍ତ୍ତମାନ ଉପରେ । ଏମାନଙ୍କ ଦୃଷ୍ଟି ମଧ୍ୟ ସଂକୀର୍ଣ୍ଣ । କେବଳ ସୂତାକଟା, ଖଦଡ଼ପିନ୍ଧା, ବିଦେଶୀ ବସ୍ତ୍ରବର୍ଜନ ଭଳି ସୀମିତ କାର୍ଯ୍ୟଦ୍ୱାରା ପ୍ରକୃତ ସ୍ୱରାଜଲାଭ ସମ୍ଭବ ନୁହେଁ । ସେ ମୁକ୍ତ ନିର୍ଭୀକ କଣ୍ଠରେ ପ୍ରଚାର କଲେ, "ସ୍ୱରାଜ ତ ଏକମାତ୍ର ଆମର ବସ୍ତ୍ରସ୍ୱଚ୍ଛଳତା ଉପରେ ପ୍ରତିଷ୍ଠିତ ନୁହେଁ । ତାହାର ଯଥାର୍ଥ ଭିତ୍ତି ଆମ୍ଭମାନଙ୍କର ମନ ଉପରେ, ସେଇ ମନ ତାର ବହୁଧାଶକ୍ତି-ଦ୍ୱାରା ଏବଂ ସେଇ ଆତ୍ମଶକ୍ତି ଉପରେ ଆସ୍ଥାଦ୍ୱାରା ସ୍ୱରାଜ ସୃଷ୍ଟି କରି ଚାଲେ । ...... ଆମ ଦେଶରେ ବି ସେଇ ଚିତ୍ତ ବିକାଶ ଉପରେ ସ୍ୱରାଜ ଠିଆ ହୋଇପାରିବ । ସେଥିଲାଗି କୌଣସି ବାହ୍ୟ କ୍ରିୟା, ବାହ୍ୟ ଫଳ ନୁହେଁ, ଜ୍ଞାନବିଜ୍ଞାନ ପ୍ରୟୋଜନ ।"

(ସତ୍ୟେର ଆହ୍ୱାନ—କାଳାନ୍ତର ପୃ: ୨୦୯-୧୦)

ଆଉ ଗୋଟିଏ ଦିଗରୁ ଏ ଯୁଗରେ ଭାରତୀୟ ବୁଦ୍ଧିଜୀବୀଙ୍କ ମନରେ ଏକ ବିରାଟ ଶୂନ୍ୟତା ଦେଖା ଦେଇଥିଲା । ଭାରତର ଆଧୁନିକ ଶିକ୍ଷାନୀତିର ପ୍ରବର୍ତ୍ତକ ଇଂରେଜ ଶିକ୍ଷାବିତ୍ ମ୍ୟାକଲେଙ୍କ କଳ୍ପନା ସତ୍ୟ ହୋଇଥିଲା । ସାଧାରଣ ବୁଦ୍ଧିଜୀବୀମାନେ ରକ୍ତରେ କେବଳ ଭାରତୀୟ ଥାଇ ମନରେ ଇଉରୋପୀୟ ହୋଇ ଗଢ଼ା ହୋଇ-ଥିଲେ । ତେଣୁ ନିଜ ଦେଶରେ ସେମାନେ ନିଜକୁ ବିଦେଶୀ ବୋଲି ମନେ କରୁଥିଲେ । ଏକା ଦିନକେ ଧର୍ମାନ୍ତର ଗ୍ରହଣ ବା ଜୀବନରେ ଥରେ ଦେଶାନ୍ତର ଭ୍ରମଣ ସେମାନଙ୍କୁ ବିଦେଶୀ ଶାସକଙ୍କର ନିଜର ଲୋକ କରିପାରୁ ନ ଥିଲା । ଭାରତବର୍ଷରେ ଯେତେ ବଡ଼ ପଦମର୍ଯ୍ୟାଦାରେ ପ୍ରତିଷ୍ଠିତ ଥିଲେ ହେଁ ପ୍ରତି ଇଂରେଜର ସ୍ୱପ୍ନର ସ୍ୱଦେଶ ଥିଲା ଇଂଲଣ୍ଡ । ଅଥଚ ଭାରତୀୟ ବୁଦ୍ଧିଜୀବୀଙ୍କ ସ୍ୱପ୍ନରେ ଗଢ଼ା ସ୍ୱଦେଶର ମାନଚିତ୍ର କେଉଁଠି ଅଙ୍କିତ ହୋଇ ନ ଥିଲା । ଏମାନଙ୍କ ମନରେ ଏପରି ଦେଶର ଚିତ୍ର କବି ଗଭୀର ଭାବରେ ଅଙ୍କନ କଲେ । ସେ ପ୍ରଚାର କଲେ—ଜନ୍ମଗତ ଅଧିକାରରେ ଦେଶ ଗଢ଼ା ହୁଏନା, କର୍ମମୟ ସାଧନାରେ ଯଥାର୍ଥ ସ୍ୱଦେଶ ଗଠିତ ହୁଏ । ଏହିପରି ଏକ ଦେଶ ଏବେ ବି ଗଢ଼ା ହୋଇ ନାହିଁ—ଯେଉଁଠି ଥିବ ଅକ୍ଷୟ ଶାନ୍ତି, ଅବିରାମ କର୍ମର ପ୍ରବାହ, ଅଖଣ୍ଡ ମୁକ୍ତିର ସ୍ୱାଦ, ଅବିଚ୍ଛିନ୍ନ ସୌହାର୍ଦ୍ଦ୍ୟର ବନ୍ଧନ, ଅସୀମ ଜ୍ଞାନର ସାଧନା । ସେଇ ସ୍ୱଦେଶ ସର୍ବମାନବର ସ୍ୱଦେଶ । ସେଇ ଦେଶଭାଗ ଗଠନ ଲାଗି ସ୍ୱପ୍ନଦ୍ରଷ୍ଟା କବି ଭାରତୀୟ ବୁଦ୍ଧିଜୀବୀମାନଙ୍କୁ ଉଦ୍‌ବୁଦ୍ଧ କରିଛନ୍ତି । ଏ ଦିଗରେ ରବୀନ୍ଦ୍ରନାଥଙ୍କର ନୀତି ବର୍ଜନଶୀଳତା ନୁହେଁ, ଗ୍ରହଣଶୀଳତା । ତାଙ୍କଠାରେ କୌଣସି ବସ୍ତୁ ବିଦେଶୀ ବୋଲି ବର୍ଜନୀୟ ଓ ସ୍ୱଦେଶୀ ବୋଲି ଗ୍ରହଣୀୟ ନୁହେଁ । ସତ୍ୟ ଗ୍ରହଣୀୟ, ମିଥ୍ୟା ବର୍ଜନୀୟ । ଫରାସୀ ଓ ରୁଷିଆର ରାଜନୈତିକ ବିପ୍ଳବ, ପ୍ରାଚୀନ ଓ

ଆଧୁନିକ ଧାର୍ମିକ ଓ ଆଧ୍ୟାତ୍ମିକ ଆନ୍ଦୋଳନ, ପ୍ରାଚୀନ ଓ ଆଧୁନିକ ସାହିତ୍ୟ ଓ ସଂସ୍କୃତିରେ ପ୍ରତିଫଳିତ ମାନବିକତାର ଆଦର୍ଶ ସମସ୍ତ ଭିତରର ସତ୍ୟ ସାରାଂଶ ସଂଗ୍ରହ କରି ରବୀନ୍ଦ୍ରନାଥ ଏଇପରି ଏକ ସ୍ୱଦେଶ ଗଠନ ଲାଗି ପରିକଳ୍ପନା କରି ଯାଇଛନ୍ତି । ଶେଷ ବୟସରେ କବି ରୁଷ ଭ୍ରମଣରେ ଯାଇଥିଲେ । ଯେଉଁ ସାମ୍ୟବାଦୀମାନଙ୍କୁ ବହୁ ଦେଶର ଚିନ୍ତାଶୀଳ ଲୋକ ଧର୍ମବିରୋଧୀ ବିଶ୍ୱାସିକାମସ୍ୱ ପାଷାଣ୍ଡ ରୂପେ ଦେଖୁଥିଲେ, ଭାରତବର୍ଷର ଏକ ଧାର୍ମିକ ଆନ୍ଦୋଳନର ଏକଦା ନେତା, ପ୍ରାଚୀନ ଓ ମଧ୍ୟଯୁଗୀୟ ଭାରତୀୟ ଧାର୍ମିକ ସାହିତ୍ୟର ଅନୁରାଗୀ ଭକ୍ତ ରବୀନ୍ଦ୍ରନାଥ ସେମାନଙ୍କୁ ଉଦାର ଦୃଷ୍ଟିରେ ଦେଖିଛନ୍ତି । ରୁଷିଆର ଜନଶିକ୍ଷା ବ୍ୟବସ୍ଥା, ଶ୍ରମସଂସ୍ଥା ସଂଗଠନ ଆଦିରେ ଯାହା କିଛି ସ୍ପୃହଣୀୟ, ତାହା ଗ୍ରହଣ କରି ସ୍ୱଦେଶ ଉନ୍ନତିରେ ବିନିଯୋଗ ଲାଗି ନିର୍ଦ୍ଦେଶ ଦେଇ ଯାଇଛନ୍ତି ।

ମଧ୍ୟଯୁଗୀୟ ବିଚ୍ଛିନ୍ନତା ଓ ଅସଂହତ ଜୀବନଧାରା ସ୍ଥାନରେ ଶିଳ୍ପବିପ୍ଳବ ଦ୍ୱାରା ଏକ ସଂହତ ଓ ସୁସ୍ଥ ସମାଜର ପ୍ରତିଷ୍ଠା ଆଧୁନିକ ଯୁଗର ଶ୍ରେଷ୍ଠ ସ୍ୱପ୍ନ । ବିଜ୍ଞାନ ଓ ଯନ୍ତ୍ରଶକ୍ତିଦ୍ୱାରା ଏହାର ସାଧନ ଯେ ସମ୍ଭବ, ଏ ବିଶ୍ୱାସ ଏବେ ବି ଜୀବନ୍ତ । ଗାନ୍ଧି-କଳ୍ପିତ ଚରଖା ଅର୍ଥନୀତିର ଆଦର୍ଶ ଯୁଗରେ ରବୀନ୍ଦ୍ରନାଥ କେବଳ ଏହାର ବିରୋଧ କରିନାହାନ୍ତି, ବରଂ ଯନ୍ତ୍ରଶକ୍ତି ଓ ବିଜ୍ଞାନର ସ୍ୱାଗତ କରିଛନ୍ତି । ଯନ୍ତ୍ରରାକ୍ଷସର କବଳରେ ମନୁଷ୍ୟର ବ୍ୟକ୍ତିତ୍ୱ ଯେପରି କବଳିତ ଓ କଳୁଷିତ ନ ହୁଏ, ତାହାର କଳ୍ପନା କରିଛନ୍ତି । ଯଦି ଯନ୍ତ୍ର ମନୁଷ୍ୟକୁ କେବଳ କ୍ଷମତାଶାଳୀ କରେ, ତାହା ସ୍ପୃହଣୀୟ ନୁହେଁ । ରବୀନ୍ଦ୍ରନାଥଙ୍କ ବିଚାରରେ ବ୍ୟକ୍ତି ଓ ବ୍ୟକ୍ତି ମଧ୍ୟରେ ସମ୍ପର୍କ କ୍ଷମତା ଓ ମମତା ଉଭୟଦ୍ୱାରା ନିୟନ୍ତ୍ରିତ । ଶକ୍ତିଧର ମମତାମୟ ହେଲେ କ୍ଷମତାର ଅପବ୍ୟବହାର କ୍ୱଚିତ ଘଟିଥାଏ । ଏହି ଭାବରେ ରବୀନ୍ଦ୍ରନାଥ ନବମାନବ ଅଭ୍ୟୁଦୟର ସ୍ୱପ୍ନ ଦେଖିଅଛନ୍ତି । କ୍ଷମତାର ଅପବ୍ୟବହାର ଉପରେ ମନୁଷ୍ୟକୁ କୌଣସି ପ୍ରକାରେ ନିର୍ଜୀବ ଓ କ୍ଲୀବ କରି ରଖିବାରେ ସେ ଘୋର ବିରୋଧୀ । କ୍ଷମତା-ମଦମତ୍ତ ୟୁରୋପ ଯେ ଆଧୁନିକ ପୃଥିବୀର ଦୁର୍ଦ୍ଦଶାର କାରଣ, ଏହା ସେ ବିଶ୍ୱାସ କରି ନାହାନ୍ତି । ବରଂ ଏସିଆ ଓ ଆଫ୍ରିକାର ଜନଗଣଙ୍କର ସୁଷୁପ୍ତି ଓ ନିର୍ଜୀବତା ହିଁ ଆଧୁନିକ ପୃଥିବୀର ଦୁର୍ଦ୍ଦଶାର କାରଣ । ରବୀନ୍ଦ୍ର ଭାଷାରେ "ଯେ ଦୁର୍ବଳ ସେ ସବଳ ' ପକ୍ଷରେ ସେହିପରି ଭୟଙ୍କର; ଯେପରି ହାତୀ ପକ୍ଷରେ ଚୋରାବାଲି ।"

ପ୍ରତ୍ୟେକ ଶକ୍ତିର ଏକ ପ୍ରକାର ସ୍ଥିତାବସ୍ଥା ଓ କ୍ରିୟାଶୀଳ ଅବସ୍ଥା ବିଦ୍ୟମାନ । ଆଜି ଯେ ସୁପ୍ତ, ଦିନେ ସେ ଜାଗ୍ରତ ହେବ—ଏ ବିଶ୍ୱାସ ରବୀନ୍ଦ୍ରନାଥଙ୍କର ଦୃଢ଼ ଥିଲା । ଭାରତବର୍ଷର ନିମ୍ନସ୍ଥ ଜନସାଧାରଣ, ଶୂଦ୍ର ଓ ନାରୀ, ଏ ସମସ୍ତଙ୍କ ଭିତରେ ଯେଉଁ ଶକ୍ତି ସୁପ୍ତ ହୋଇ ରହିଅଛି, ମୃତ୍ତିକାର ଅନ୍ଧକାର ଭିତରୁ ସଂଚିତ ଆଗ୍ନେୟ ଇନ୍ଧନର ଉତ୍ତୋଳନ ଭଳି ଏହାର ଉତ୍ତୋଳନ ଆବଶ୍ୟକ । ଏଥିଲାଗି ସେ ନିଜ ଅନୁଷ୍ଠାନରେ ପ୍ରଥମେ ସହଶିକ୍ଷାର ପ୍ରବର୍ତ୍ତନ କରିଥିଲେ । ଉଚ୍ଚ ଅଭିଜାତ

ଜନସାଧାରଣଙ୍କର ନିମ୍ନ ଜନସାଧାରଣଙ୍କ ସହିତ ସାଂସ୍କୃତିକ ଓ ସାମାଜିକ ମିଳନ-ଦ୍ୱାରା ଏକ ନୂତନ ପ୍ରଗତିଶୀଳ ସମାଜ ଓ ସଂସ୍କୃତିଗଠନର କଳ୍ପନା କରିଥିଲେ । ସେ ଚାହିଁଥିଲେ ଆଧୁନିକ ଯନ୍ତ୍ରଶିଳ୍ପ, ବେତାର, ରଙ୍ଗମଞ୍ଚ ଆଦିକୁ ଗ୍ରାମାଭିମୁଖୀ କରିବାକୁ ଓ ପଲ୍ଲୀର ସାମାଜିକ ସହୃଦୟତା, ଜୀବନବୋଧ, ସଙ୍ଗୀତି ଓ କଳାକୁ ସହରାଭିମୁଖୀ କରାଇବାକୁ । ଏଥିଲାଗି ବିଶ୍ୱଭାରତୀ ପଲ୍ଲୀସେବା ସଂଗଠନ ଓ ଶ୍ରୀନିକେତନ ଗଢ଼ା ହୋଇଥିଲା । ପଲ୍ଲୀଜୀବନ ବିଶ୍ୱାସପ୍ରଧାନ । ସେମାନେ ମୁକ୍ତିଦ୍ୱାରା ଚାଳିତ ନ ହୋଇ 'ଭକ୍ତି' ଦ୍ୱାରା ଚାଳିତ ହୁଅନ୍ତି । ଧର୍ମ, ରାଜନୀତି, ସମାଜନୀତି ସବୁରେ ଏକ ବିଶ୍ୱାସ, ପ୍ରତିଶ୍ରୁତି ଓ ଦୈବବାଣୀ ଭଳି ନିର୍ଦ୍ଦିଷ୍ଟ ଶ୍ରେଣୀସ୍ଥ କାହାରି ଉପଦେଶଦ୍ୱାରା ଚାଳିତ ହେବା ଏକ ହୀନ ଗ୍ରାମୀଣ ପ୍ରବୃତ୍ତି । ରବୀନ୍ଦ୍ରନାଥ ଏହାର ପୂର୍ଣ୍ଣ ବିରୋଧ କରିଛନ୍ତି । ବିଶ୍ୱାସପ୍ରଧାନ କୌଣସି ଅନ୍ଧ ସାଧନାରେ ପ୍ରବୃତ୍ତ ହେବା, କାହାରି ବୃଥା ପ୍ରତିଶ୍ରୁତିରେ ବା ଭୟରେ ଭଳିଯିବା ଘୋର ମାନସିକ ଦାସତ୍ୱ ଓ ବୁଦ୍ଧିଭ୍ରାନ୍ତିର ପରିଚାୟକ । ଏପରି କି ମହାତ୍ମା ଗାନ୍ଧିଜୀଙ୍କ ପ୍ରତି ଗଭୀର ଶ୍ରଦ୍ଧା ଓ ସମ୍ମାନ ସତ୍ତ୍ୱେ ତାଙ୍କର କୌଣସି ପ୍ରତିଶ୍ରୁତି ବିନା ଯୁକ୍ତିରେ ଗ୍ରହଣ ନ କରିବାକୁ ଦେଶବାସୀଙ୍କୁ ସେ ନିବେଦନ କରିଛନ୍ତି । ସ୍ୱରାଜ୍ୟ ଲାଗି ଗାନ୍ଧିଜୀଙ୍କ କଳ୍ପିତ ଚରଖାର ବିରୋଧ କରି ଲେଖିଥିଲେ, "ଏ ରକମ ଅନ୍ଧସାଧନାରେ ମାହାତ୍ମାଙ୍କ ଭଳି ଲୋକ ହୁଏତ କିଛି ଦିନ ଲାଗି ଦେଶବାସୀଙ୍କୁ ପ୍ରବୃତ୍ତ କରାଇପାରନ୍ତି...... । ମୁଁ ମନେ କରେ ଏ ପ୍ରକାର ମତ ସ୍ୱରାଜ୍ୟଲାଭର ଅନୁକୂଳ ନୁହେଁ ।" "କାହାରି ମୁହଁର କଥାରେ ଅଣ୍ଣମାତ୍ର ନିର୍ଭର କରି ଆମେ ସାର୍ବଜନୀନ କୌଣସି ପନ୍ଥା ଅବଲମ୍ବନ କରିପାରିବୁଁ ନାହିଁ । ଆମ୍ଭେମାନେ ବିଶ୍ୱାସଯୋଗ୍ୟ ପ୍ରଣାଳୀରେ ତଥ୍ୟାନୁସନ୍ଧାନ ଦାବୀ କରୁ ।"

ଆଧୁନିକ ଯୁଗ ବିଶେଷ ସାଧନାର ଯୁଗ । ଆଧୁନିକ ଯୁଗରେ ବୁଦ୍ଧିଜୀବୀମାନେ ଏହି ଆଦର୍ଶରେ ଚାଳିତ ହୋଇ ଜ୍ଞାନ ଓ କର୍ମର ଏକ ଏକ ଧାରାରେ ଆତ୍ମନିୟୋଗ କରି ପରସ୍ପର ମଧ୍ୟରେ ସମନ୍ୱୟ ରକ୍ଷା କରିବାକୁ ସମର୍ଥ ହୋଇପାରୁ ନାହାନ୍ତି । ଏହି ଆଦର୍ଶ ବୃହତ୍ତର ସମାଜକୁ ପ୍ରଭାବିତ କରୁଛି । ଏକ ଏକ ବିଶେଷ ଲକ୍ଷ୍ୟରେ ଚାଳିତ ସମାଜ ମଧ୍ୟ ଘୋର ବିପର୍ଯ୍ୟୟର ସମ୍ମୁଖୀନ ହେଉଛି । ଯୁଦ୍ଧ ବା ବିପ୍ଳବ ତାର ଅଗ୍ରଗତିର ପଥ ରୋଧ କରୁଛି । ଏହି ଆଦର୍ଶର ବିରୋଧ କରି ପ୍ରାଚୀନ ଇତିହାସରୁ ଦୃଷ୍ଟାନ୍ତ ଦେଇ କବି କହିଛନ୍ତି—"ସ୍ପାର୍ଟା ଏକ ବିଶେଷ ଦୃଷ୍ଟି ଉପରେ ଲକ୍ଷ୍ୟ ରଖି ମନୁଷ୍ୟର ଶକ୍ତିକୁ ସଂକୀର୍ଣ୍ଣ କରି ତାକୁ ସବଳ କରିବାକୁ ଚେଷ୍ଟା କରିଥିଲା; ସ୍ପାର୍ଟାର ଜୟ ହୋଇ ନାହିଁ । ଏଥେନ୍ସ ମନୁଷ୍ୟର ସମସ୍ତ ଶକ୍ତିକୁ ଉନ୍ମୁକ୍ତ କରି ତାକୁ ପୂର୍ଣ୍ଣତା ଦେବାକୁ ଚାହିଁଥିଲା । ଏଥେନ୍ସର ଜୟ ହୋଇଛି—ତାର ସେହି ଜୟର ପତାକା ଆଜି ବି ମାନବସଭ୍ୟତାର ଶିକ୍ଷାର ଚୂଡ଼ାରେ ଉଡ଼ୁଛି ।" ( କାଳାନ୍ତର ପୃ: ୨୦୮ ) ।

ବୁଦ୍ଧିଜୀବୀ ରବୀନ୍ଦ୍ର କୌଣସି ସମୟରେ ମୁହୂର୍ତ୍ତ ଦ୍ୱାରା ଚାଳିତ ହୋଇ ଖଣ୍ଡ ଓ କ୍ଷୁଦ୍ରର ଅନ୍ତରାଳରେ ସମଗ୍ର ଉପରୁ ଲକ୍ଷ୍ୟ ହରାଇ ନାହାନ୍ତି; ମନୁଷ୍ୟର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ ତାଙ୍କ ଦୃଷ୍ଟିରେ ଗୋଟିଏ ସୂତ୍ରରେ ଗ୍ରଥିତ । ଅତୀତର ସମସ୍ତ ଶୁଭ୍ର ସତ୍ୟ ଜ୍ଞାନରାଶି ଆହରଣ କରି ବର୍ତ୍ତମାନର ସର୍ଜନଶୀଳ ସାଧନାରେ ଭବିଷ୍ୟତ ଗଠନର ସ୍ୱପ୍ନ ଦେଖିଛନ୍ତି । ରବୀନ୍ଦ୍ରନାଥ କବି ଓ ଦ୍ରଷ୍ଟା । ଜ୍ଞାନ ତାଙ୍କଠାରେ ସୃଷ୍ଟିର ସାଧନା, ଅନୁଭୂତି ତାଙ୍କଠାରେ ସତ୍ୟର ଜ୍ୟୋତି, ମୁହୂର୍ତ୍ତର ଘଟଣା ତାଙ୍କଠାରେ ଚିରନ୍ତନ ସବ ରୂପେ ରୂପାୟିତ ହୋଇଛି । ସମସ୍ତ ପ୍ରକାର ଅଜ୍ଞାନତା, ଅନ୍ଧବିଶ୍ୱାସ, ଅହମିକା ଓ କୁସଂସ୍କାରର ଜାଲ ଭେଦ କରି ଛଳନାମୟୀ ପ୍ରକୃତିର ହାତରୁ ଜ୍ଞାନମୟ ସାଧନା ପଥରେ ଆଲୋକର ଅକ୍ଷୟ ଅଧିକାର ଲାଭ କରିବାକୁ ସେ ଚାହିଁଛନ୍ତି । ଏହି ଆଲୋକର ସାଧନା ହିଁ ଅକ୍ଷୟ ଶାନ୍ତିର ସାଧନା ।

"ଅନାୟାସେ ଯେ ପେରେଛେ ଛଳନା ସହିତେ
ସେ ପାୟ ତୋମାର ହାତେ
ଶାନ୍ତିର ଅକ୍ଷୟ ଅଧିକାର ।"

---

# ରବୀନ୍ଦ୍ରନାଥଙ୍କ ନାଟକ

## ଶ୍ରୀ ଶିବନାଥ

### ଅନୁବାଦ—ଶ୍ରୀ ଦେବୀପ୍ରସନ୍ନ ପଟ୍ଟନାୟକ

ରବୀନ୍ଦ୍ରନାଥଙ୍କ ପ୍ରତିଭା ସଙ୍ଗୀତ, ସାହିତ୍ୟ ଓ କଳା ମାଧ୍ୟମରେ ପ୍ରକାଶିତ ହୋଇଛି । କେବଳ ସାହିତ୍ୟ ଉପରେ ଦୃଷ୍ଟି ରଖି ରବୀନ୍ଦ୍ର ପ୍ରତିଭାର ବିଚାର କଲେ ସାହିତ୍ୟର ପ୍ରତ୍ୟେକ ଅଙ୍ଗ ଦେଖିବାକୁ ମିଳିବ । ସଙ୍ଗୀତ ଓ କାବ୍ୟ ରବୀନ୍ଦ୍ର ପ୍ରତିଭା-ପ୍ରକାଶର ମୁଖ୍ୟ ବାହକ । ସଙ୍ଗୀତ ଓ କାବ୍ୟ ବ୍ୟତୀତ ନାଟକ ମଧ୍ୟରେ ହିଁ ତାଙ୍କ ପ୍ରତିଭାର ଶ୍ରେଷ୍ଠ ପରିଚୟ ମିଳିବ । ଏଥିରେ ସଙ୍ଗୀତମୟୀ ଓ କାବ୍ୟମୟୀ ପ୍ରତିଭାର ସମନ୍ୱିତ ରୂପ ପ୍ରତିଭାସିତ ହୋଇଛି । 'କାବ୍ୟେଷୁ ନାଟକଂ ରମ୍ୟମ୍' ଆଦର୍ଶର ରସଗ୍ରାହୀ ରବୀନ୍ଦ୍ରନାଥ ନାଟକକୁ ଆପଣା ପ୍ରତିଭା-ପ୍ରକାଶର ବାହନରୂପେ ଉପଯୋଗ ନ କରନ୍ତେ ବା କିପରି ? ଟଲଷ୍ଟୟଙ୍କ ଉକ୍ତି 'କଳାର ଏକ ଅଙ୍ଗ, ସମ୍ଭବତଃ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ଅଙ୍ଗ ନାଟକ' ଏହି ପ୍ରସଙ୍ଗରେ ତାଙ୍କ ଚିନ୍ତାକୁ ପ୍ରଭାବିତ କରିବା ଅସମ୍ଭବ ନୁହେଁ ।

ସାହିତ୍ୟର ଏପରି କୌଣସି ରସ ନାହିଁ, ଯାହା ରବୀନ୍ଦ୍ରନାଥ ଆପଣା ନାଟକ ମାଧ୍ୟମରେ ପରିବେଷଣ କରି ନାହାନ୍ତି । ନାଟ୍ୟକଳାର ଏପରି କୌଣସି ବିଧି ନାହିଁ, ଯାହା ସେ ଆପଣାର ନାଟକ ମଧ୍ୟରେ ଉପଯୋଗ କରି ନାହାନ୍ତି । ତାଙ୍କ ନାଟକର ସଂଖ୍ୟା ମଧ୍ୟ କମ ନୁହେଁ ।

ରବୀନ୍ଦ୍ରନାଥଙ୍କର ଯେଉଁ ପ୍ରତିଭାର ଝଲକ ତାଙ୍କ ନାଟକରେ ଦେଖିବାକୁ ମିଳେ, ତାହାର ମୂଳ ସ୍ୱର କ'ଣ ? ଏହାର ମୂଳସ୍ୱର ତାଙ୍କ ସାହିତ୍ୟର ସମଗ୍ର ସ୍ୱରଠାରୁ ବିଚ୍ଛିନ୍ନ ବା ସ୍ୱତନ୍ତ୍ର ନୁହେଁ । ତାଙ୍କ ସାହିତ୍ୟର ମୂଳ ସ୍ୱର ତାଙ୍କର ନିଜ କଥାରେ 'ଏହି ପୃଥିବୀର ମାଟିର ବନ୍ଧନ ମୋ ମନକୁ ବାନ୍ଧି ରଖିଛି । × × × ମୋର ଗୃହ-ପାଖରେ ପ୍ରବାହିତ ସୁଧା ଶେଷ ହୋଇ ନାହିଁ । ଏଥିପାଇଁ 'ଦୂର' ବାଟକୁ ଯିବାର କ୍ଷୁଧା ମୋର ନାହିଁ । ମୋର ଗୃହପାଖରେ ଏହି ଯେଉଁ ଛୋଟମୋଟ ଜଗତ ମୁଁ ତ ତା'ର କୂଳକିନାରା ପାଉ ନାହିଁ । ଏଥିପାଇଁ ମୁଁ ଚାହୁଁଛି ଯେ ଏ ସଂସାର ମୋତେ ଭଲ ଲାଗୁଛି । ଏଥିରେ ମୋ ମନ ଭୁଲି ଯାଉଛି ।'

“ଆମାର ମନକେ ବେଁଧେଛେରେ ଏଇ ଧରଣୀର ମାଟିର ବାଁଧନ
× × × ×
ପୁରାଇନା ଭାଇ କାଛେର ସୁଧା, ନାଇ ଯେ ରେ ତାର ଦୂରେର କ୍ଷୁଧା
ଏଇ-ଯେ ଏ-ସବ ଛୋଟ ଖାଟୋ ପାଇନା ଏ ଦେର କୂଲକିନାରା
× × × ×
ଲାଗଲେ ଭାଲେ ମନ ଭୁଲଲେ, ସେଇ କଥାଟାଇ ଗେୟେଛି ବେଡ଼ାଇ ।”

ଅନ୍ୟତ୍ର ରବୀନ୍ଦ୍ରନାଥ କହିଛନ୍ତି, ‘ମୋତେ ଲାଗୁଛି, ମୋର କାବ୍ୟରଚନାର ସେହା ହିଁ ଏକମାତ୍ର ବିଷୟ । ଏ ବିଷୟର ନାମ ଦିଆଯାଇପାରେ ସୀମା ମଧ୍ୟରେ ଅସୀମ ସହିତ ମିଳନ-ସାଧନାର ବିଷୟ’ । (ଜୀବନ ସ୍ମୃତି, ପୃ. ୧୭୨, ବିଶ୍ୱଭାରତୀ ଗ୍ରନ୍ଥାଳୟ, କଲିକତା । ବଙ୍ଗଳା ସମ୍ବତ୍ ୧୩୫୪ ।

ତାଙ୍କ ସାହିତ୍ୟର ମୂଳ ସ୍ୱର ଜୀବନର ଦ୍ୱନ୍ଦ୍ୱ, ସୁଖ-ଦୁଃଖ, ଆଶା ନିରାଶା, ବିରହ-ମିଳନ, ବିଳାସ-ବୈରାଗ୍ୟ, ସତ୍ୟ-ମିଥ୍ୟା, ପ୍ରକାଶ-ଅନ୍ଧକାର ମାଧ୍ୟମରେ ଧ୍ୱନିତ ହୋଇଛି । ଦ୍ୱନ୍ଦ୍ୱମୟ ବିଶ୍ୱଜଗତ ଅତିରିକ୍ତ ଅନ୍ୟ କୌଣସିଠାରୁ ତାଙ୍କ ସାହିତ୍ୟର ମୂଳ ସ୍ୱର ଆସି ନାହିଁ । ସେହା ହିଁ ତାଙ୍କ ନାଟକର ମୂଳ ସ୍ୱର ।

ନାଟ୍ୟ ଶିଳ୍ପବିଧି ଦୃଷ୍ଟିରୁ ବିଚାର କଲେ ରବୀନ୍ଦ୍ରନାଥଙ୍କ ନାଟକର ତିନୋଟି ଶ୍ରେଣୀ ଆଖିରେ ପଡ଼େ—ଗୀତିନାଟ୍ୟ, କାବ୍ୟନାଟ୍ୟ ଓ ନୃତ୍ୟନାଟ୍ୟ । ରବୀନ୍ଦ୍ରନାଥ ନାଟକ ରଚନାର ଆରମ୍ଭ କରିଥିଲେ ଗୀତିନାଟ୍ୟରୁ ଓ ଏହାର ପରିଣତି ନୃତ୍ୟନାଟ୍ୟରେ । ତାଙ୍କର ତିନୋଟି ଗୀତିନାଟ୍ୟ—ବାଲ୍ମୀକି ପ୍ରତିଭା, କାଳମୃଗୟା ଓ ମାୟାର ଖେଳା । ଏ ତିନୋଟି କ୍ରମଶଃ ସନ ୧୮୮୧,’୮୨,’୮୮ ମସୀହାରେ ପ୍ରକାଶିତ ହୋଇଛି । ଧ୍ୟାନର ସହିତ ବିଚାର କଲେ ଜଣାଯିବ ଯେ, ‘ବାଲ୍ମୀକିପ୍ରତିଭା’ ତଥା ‘କାଳମୃଗୟା’ରେ ନାଟ୍ୟରସ ମୁଖ୍ୟ ଓ ସଙ୍ଗୀତରସ ଗୌଣ । ‘ମାୟାର ଖେଳ’କୁ ହିଁ ଯଥାର୍ଥ ଗୀତିନାଟ୍ୟ ରୂପେ ବୁଝିବାକୁ ହେବ । ସେଗୁଡ଼ିକ ସମ୍ବନ୍ଧରେ ରବୀନ୍ଦ୍ରନାଥଙ୍କ ମତ ହେଉଛି, ‘ବାଲ୍ମୀକିପ୍ରତିଭା ଓ କାଳମୃଗୟା ଯେପରି ଗାନ ସୂତ୍ରରେ ଗୁନ୍ଥା ନାଟ୍ୟର ମାଳା, ସେହିପରି ମାୟାର ଖେଳା ନାଟ୍ୟସୂତ୍ରରେ ଗୁନ୍ଥା-ଗାନର ମାଳା’ (ଜୀବନସ୍ମୃତି, ପୃ. ୧୩୨) ।

ବାଲ୍ମୀକି ପ୍ରତିଭାରେ ଦେଶୀବିଦେଶୀ ସୁରର ସମନ୍ୱୟ ଦେଖିବାକୁ ମିଳେ । ମାୟାର ଖେଳାର ମୂଳମନ୍ତ୍ର ପ୍ରେମ ସହିତ ବ୍ୟଥା, ବିରହ ଓ ଦ୍ୱନ୍ଦ୍ୱ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ପ୍ରେମର ମୋହ ଅପସାରିତ ହେଲେ ତାହାର ସ୍ୱାଭାବିକ ରୂପ ପରିସ୍ଫୁଟ ହୁଏ ।

ରବୀନ୍ଦ୍ରନାଥଙ୍କ ସାହିତ୍ୟ-ଜୀବନର ପ୍ରାରମ୍ଭରେ ବଙ୍ଗଳା ସାହିତ୍ୟ କ୍ଷେତ୍ରରେ ବିହାରୀଲାଲଙ୍କର ପ୍ରଭାବ ବିଶେଷ ପରିମାଣରେ ଥିଲା । ରବୀନ୍ଦ୍ରନାଥ ମଧ୍ୟ ତାଙ୍କ ପ୍ରଭାବରୁ ବଞ୍ଚିତ ହୋଇ ନାହାନ୍ତି । ବିହାରୀଲାଲ ପୂର୍ବରୁ କାବ୍ୟରଚନା ଆରମ୍ଭ

କରିଥିଲେ ଓ ରବୀନ୍ଦ୍ରନାଥଙ୍କର ସମକାଳୀନ ଲେଖକ ମଧ୍ୟ ଥିଲେ । 'ବାଲ୍ମୀକି ପ୍ରତିଭା' ଉପରେ ବିହାରୀଲାଲଙ୍କ 'ଶାରଦାମଙ୍ଗଳ' କାବ୍ୟର ପ୍ରଭାବ ରବୀନ୍ଦ୍ରନାଥ ନିଜେ ସ୍ୱୀକାର କରିଛନ୍ତି । 'ଏଇ ନାଟକର ମୂଳଭାବ କେବଳ ନୁହେଁ, ସ୍ଥାନେ ସ୍ଥାନେ ଏହାର ଭାଷା ମଧ୍ୟ ବିହାରୀଲାଲଙ୍କ ଶାରଦାମଙ୍ଗଳର ପ୍ରାରମ୍ଭିକ ଅଂଶରୁ ଗୃହୀତ ହୋଇଛି ।' (ଆଧୁନିକ ସାହିତ୍ୟ, ପୃ. ୪୫, ବିଶ୍ୱଭାରତୀ ଗ୍ରନ୍ଥାଳୟ, ବଂ. ସ., ୧୩୪୫ ) ।

ରବୀନ୍ଦ୍ରନାଥଙ୍କର କାବ୍ୟନାଟକ ହେଉଛି ଚିତ୍ରାଙ୍ଗଦା, ବିଦାୟ ଅଭିଶାପ, ଗାନ୍ଧାରୀର ଆବେଦନ, ସତୀ, ନରକବାସ, କର୍ଣ୍ଣକୁନ୍ତୀ ସମ୍ବାଦ, ଲକ୍ଷ୍ମୀର ପରୀକ୍ଷା ଓ ମାଳିନୀ । ଏସବୁ ନାଟକଗୁଡ଼ିକ ମଧ୍ୟରେ ଚିତ୍ରାଙ୍ଗଦା ଓ ଲକ୍ଷ୍ମୀର ପରୀକ୍ଷାରେ ନାଟକୀୟ ଗୁଣ ଅଧିକ ଥିବାର ଜଣାଯାଏ । ସମସ୍ତ କାବ୍ୟନାଟକରେ କଥାକାବ୍ୟ ତଥା ନାଟ୍ୟପଦ୍ଧତିର ସମ୍ମିଶ୍ରଣ ହୋଇଛି । ଏହି ସମ୍ମିଶ୍ରଣରେ ନାଟ୍ୟକାରରୂପ ଅଳ୍ପ ଓ କବିରୂପ ଅଧିକ ପରିମାଣରେ ଆଖିରେ ପଡ଼େ । ଏଣୁ ଏଥିରେ ମୁଖ୍ୟତଃ ରବୀନ୍ଦ୍ରନାଥଙ୍କ କବିପ୍ରତିଭାର ହିଁ ପ୍ରକାଶ ଘଟିଛି । ଏହି ନାଟକଗୁଡ଼ିକର ସର୍ବପ୍ରଧାନ ବୈଶିଷ୍ଟ୍ୟ ହେଉଛି ନାଟକୀୟ ଚରିତ୍ରଗୁଡ଼ିକର ମାନସିକ ଗାମ୍ଭୀର୍ଯ୍ୟର ବିଶ୍ଳେଷଣ ଓ ଉଦ୍‌ଘାଟନ । ଏଥିରେ ଉଦ୍‌ଘାଟିତ ଧର୍ମନୀତି ଓ ସମାଜନୀତିର ଆଦର୍ଶ ଏଥି ପୂର୍ବ ଓ ପରର ରବୀନ୍ଦ୍ର ରଚନାବଳୀରେ ମଧ୍ୟ ପରିଦୃଷ୍ଟ ହୁଏ । ଏହି ନାଟକଗୁଡ଼ିକର ପ୍ରଧାନ ଚରିତ୍ର-ଦ୍ୱାରା ସମାଜ ଓ ଧର୍ମର ବିଭିନ୍ନ ଆଦର୍ଶରକ୍ଷାର ସ୍ୱରୂପ ଦେଖିବାକୁ ମିଳେ । ଏହି ଚରିତ୍ରମାନଙ୍କ ସାମନାରେ ଧର୍ମ ଓ ସମାଜର ଯେଉଁ ବିଭିନ୍ନ ଆଦର୍ଶ ଦେଖାଦେଇଛି, ସେମାନେ ତାହା ନିଃସଙ୍କୋଚ ଭାବେ ରକ୍ଷା କରିଛନ୍ତି । ଏଗୁଡ଼ିକରେ ନ୍ୟାୟଧର୍ମ ସ୍ଥାପନ ଦିଗରେ ରବୀନ୍ଦ୍ରନାଥଙ୍କ ଦୃଷ୍ଟି ଅଧିକ ପରିମାଣରେ ପଡ଼ିଛି ।

ଗାନ୍ଧାରୀର ଆବେଦନ, ସତୀ, ନରକବାସ, କର୍ଣ୍ଣକୁନ୍ତୀ ସମ୍ବାଦରେ ଭାରତର ଅତୀତ ଆଦର୍ଶର ମହତ୍ତ୍ୱର ସ୍ଥାପନ ଦିଗରେ ବିଶେଷ ଚେଷ୍ଟା ଲକ୍ଷିତ ହୁଏ । ଗାନ୍ଧାରୀର ଆବେଦନରେ ଆଧୁନିକ କାଳର ରୂପ ମଧ୍ୟ ଦେଖିବାକୁ ମିଳେ ।

ଚିତ୍ରାଙ୍ଗଦା ଓ ବିଦାୟ ଅଭିଶାପରେ ସଚେତନ ସୌନ୍ଦର୍ଯ୍ୟ ଲୋକର କଳ୍ପନାରେ କାବ୍ୟପ୍ରେରଣାର ତତ୍ତ୍ୱ ଅଧିକ ପରିମାଣରେ ମିଳେ । ଚିତ୍ରାଙ୍ଗଦା କାବ୍ୟନାଟ୍ୟକୁ ରବୀନ୍ଦ୍ରନାଥଙ୍କ 'ଶକୁନ୍ତଳା' ରୂପେ ଧାରଣା କରାଯାଇପାରେ, ଯାହାର ମୂଳସ୍ୱର—ମିଥ୍ୟା ସୌନ୍ଦର୍ଯ୍ୟଠାରୁ ସତ୍ୟ ରୂପହୀନତା ଶ୍ରେଷ୍ଠ । ଚିତ୍ରାଙ୍ଗଦା ପ୍ରଣୟିନୀରୁ ଗୃହିଣୀ ହୋଇଛି । ଏହିଠାରେ ହିଁ ଆମେ 'ଶକୁନ୍ତଳା' ସହ ସାମ୍ୟ ଦେଖୁ ।

ରବୀନ୍ଦ୍ରନାଥଙ୍କ କାବ୍ୟନାଟକଗୁଡ଼ିକ ମଧ୍ୟରୁ 'ସତୀ'ରେ ନାଟକୀୟ ତତ୍ତ୍ୱ ଅଧିକ ପରିମାଣରେ ବିଦ୍ୟମାନ । 'ମାଳିନୀ'ର ଶିଳ୍ପ ବିଷୟରେ ରବୀନ୍ଦ୍ରନାଥ କହିଛନ୍ତି—'ମାଳିନୀ'ର ନାଟ୍ୟରୂପ ସଂଯତ, ସଂହତ, ତଥା ଦେଶକାଳର ଧାରା ସହିତ ସମ୍ପୃକ୍ତ । (ରବୀନ୍ଦ୍ର ରଚନାବଳୀ, ୪ର୍ଥ ଖଣ୍ଡ, ବିଶ୍ୱଭାରତୀ ) ।

ନୃତ୍ୟନାଟ୍ୟର ରଚନା ରବୀନ୍ଦ୍ରନାଥଙ୍କ ଜୀବନର ଅନ୍ତିମ କାଳର ସୃଷ୍ଟି ।

ଋତୁନାଟ୍ୟ ବିଷୟରେ ମଧ୍ୟ ଏହି କଥା ପ୍ରଯୁକ୍ତ । ଏଣୁ ଋତୁନାଟ୍ୟର ଶିଳ୍ପବିଧି ନୃତ୍ୟନାଟ୍ୟ ପରି । ଏହି ଦୁଇ ପ୍ରକାର ନାଟକରେ ଗାନ ଓ ନୃତ୍ୟର ପ୍ରାଧାନ୍ୟ; କିନ୍ତୁ ନୃତ୍ୟନାଟ୍ୟରେ ଭାବର ବାହନ କେବଳ ନୃତ୍ୟ । ଏଥିରେ ରବୀନ୍ଦ୍ରନାଥ ଯାହା କହିଛନ୍ତି, ତାହା ଅନ୍ୟ ବାହନ ବା ମାଧ୍ୟମଦ୍ୱାରା ଅଭିବ୍ୟକ୍ତ ହୋଇପାରି ନ ଥାନ୍ତା । ଋତୁନାଟ୍ୟରେ ନୃତ୍ୟର ସଂଯୋଗ ଅନେକଙ୍କର ଆନନ୍ଦର ଅଭିବ୍ୟକ୍ତି । ଏହା ରାଜପୁତ୍ର, ରାଜପତ୍ନୀ ଆଦି ସହିତ ସମ୍ପୃକ୍ତ । ନୃତ୍ୟନାଟ୍ୟରେ ନୃତ୍ୟ ବ୍ୟକ୍ତିବିଶେଷରେ ସୁଖଦୁଃଖ, ଆଶାନିରାଶା, ଆନନ୍ଦ ପରିତୋଷରେ ଅଭିବ୍ୟକ୍ତ । ଏହି ଦୁଇ ପ୍ରକାର ନାଟକରେ ରବୀନ୍ଦ୍ରନାଥ କାବ୍ୟ, ଗାନ, ନୃତ୍ୟ, ଛନ୍ଦର ସମନ୍ୱୟ କରିଛନ୍ତି । କାଳାନୁକ୍ରମିକ ଦୃଷ୍ଟିରେ ରବୀନ୍ଦ୍ରନାଟକର ବିଚାର କଲେ ଦେଖାଯିବ ଯେ ଏଗୁଡ଼ିକରେ କ୍ରମେ ଗାନ ଓ ନୃତ୍ୟର ସଂଖ୍ୟା ବଢ଼ିଚାଲିଛି । ଏହା ମଧ୍ୟ ଜଣାଯିବ ଯେ ଏଗୁଡ଼ିକ କ୍ରମେ ସୂକ୍ଷ୍ମ ଅନୁଭୂତିର ଅଭିବ୍ୟକ୍ତି ଦିଗକୁ ଅଗ୍ରସର ହୋଇଛନ୍ତି । ଏହି କାରଣରୁ ସୂକ୍ଷ୍ମ, ସୂକ୍ଷ୍ମତର, ସୂକ୍ଷ୍ମତମର ଅଭିବ୍ୟକ୍ତି ନିମିତ୍ତ ସେ କ୍ରମଶଃ ବାଣୀ, ସୁର, ନୃତ୍ୟ ଓ ଛନ୍ଦକୁ ବାହନ ବା ମାଧ୍ୟମ ରୂପେ ଉପଯୋଗ କରିଛନ୍ତି ।

‘ଶାପମୋଚନ’, ନୃତ୍ୟନାଟ୍ୟ ‘ଚିତ୍ରାଙ୍ଗଦା’, ନୃତ୍ୟନାଟ୍ୟ ‘ଚଣ୍ଡାଳିକା’ ଓ ଶ୍ୟାମା ଯଥାର୍ଥତଃ ନୃତ୍ୟନାଟ୍ୟ । ‘ନଟୀର ପୂଜା’କୁ ନୃତ୍ୟନାଟ୍ୟ କୁହାଯାଇ ନ ପାରିଲେ ସୁଦ୍ଧା ଏହା ମଧ୍ୟରେ ନୃତ୍ୟନାଟ୍ୟର ସୂଚନା ଥିବା କଥା ନିଶ୍ଚିତ ରୂପେ କୁହାଯାଇପାରେ । ଏହାର ରଚନାକାଳ ସନ ୧୯୨୬ ମସିହା ।

‘ଶାପମୋଚନ’ରେ କଥାବସ୍ତୁ ନଗଣ୍ୟ । ଏଥିରେ ସଙ୍ଗୀତ ଓ ନୃତ୍ୟ ମାଧ୍ୟମରେ ଭାବାବେଗର ଅଭିବ୍ୟକ୍ତି ଘଟିଛି । ‘ଚିତ୍ରାଙ୍ଗଦା’, ‘ଚଣ୍ଡାଳିକା’ ‘ଶ୍ୟାମା’ରେ ଘଟଣା କମହେଲେ ମଧ୍ୟ ଅଛି । ଏଗୁଡ଼ିକରେ ଘଟଣା ତଥା ଭାବ ଉଭୟ ସଙ୍ଗୀତ ତଥା ନୃତ୍ୟ ମାଧ୍ୟମରେ ପ୍ରକାଶିତ ହୋଇଛି । ‘ଶାପମୋଚନ’ରେ ମାନବଜୀବନର ବିରହ-ମିଳନ-ଲୀଳା, ନୃତ୍ୟନାଟ୍ୟ ‘ଚିତ୍ରାଙ୍ଗଦା’ରେ ରୂପ ତଥା ରୂପାତୀତ ସତ୍ତାର ଦ୍ୱନ୍ଦ୍ୱ, ନୃତ୍ୟନାଟ୍ୟ ‘ଚଣ୍ଡାଳିକା’ ଓ ‘ଶ୍ୟାମା’ରେ ଶରୀର ତଥା ପ୍ରେମର ସଙ୍ଘର୍ଷ ପ୍ରଧାନ ବିଷୟ ।

ଶିଳ୍ପବିଧି ଦୃଷ୍ଟିରୁ ବିଚାର କଲେ ରବୀନ୍ଦ୍ରନାଥଙ୍କ କେତେକ ରୂପକ ପ୍ରଧାନ, ପ୍ରତୀକପ୍ରଧାନ ତଥା ସମସ୍ୟାପ୍ରଧାନ ନାଟକ ଦୃଷ୍ଟିଗୋଚର ହୁଏ । ଏ ଗୁଡ଼ିକରେ ଜୀବନ ତଥା ସମାଜ ସମ୍ବନ୍ଧୀ ତତ୍ତ୍ୱ କୌଣସି ନା କୌଣସି ଉପାୟରେ ପ୍ରଧାନ ଭାବରେ ପ୍ରକାଶିତ ହୋଇଛି । କୌଣସିଥିରେ ମାନବ ସହିତ ଭଗବାନଙ୍କର ସମ୍ବନ୍ଧ ତତ୍ତ୍ୱ, କୌଣସିଥିରେ ମାନବ ସହିତ ପ୍ରକୃତିର ସମ୍ବନ୍ଧ ତତ୍ତ୍ୱ, କୌଣସିଥିରେ ବା ମାନବ ସହିତ ମାନବର ସମ୍ବନ୍ଧତତ୍ତ୍ୱ । ଏହି ତ୍ରୟୀ ସମ୍ବନ୍ଧ ତତ୍ତ୍ୱର ବୀଜ ‘ପ୍ରକୃତିର ପରିଶୋଧ’ରେ ଦେଖାଯାଏ । ‘ରାଜା’ ଓ ‘ଡାକଘର’ରେ ମାନବ ସହିତ ଭଗବାନଙ୍କର ସମ୍ବନ୍ଧ, ‘ଶାରଦୋତ୍ସବ’ରେ ମାନବ ସହିତ ପ୍ରକୃତିର ସମ୍ବନ୍ଧ ଓ ‘ଅଚଳାୟତନ’ରେ

ମାନବ ସହିତ ମାନବର ସମ୍ବନ୍ଧ ବିଷୟର ବିଶ୍ଲେଷଣ କରାଯାଇଛି । 'ମୁକ୍ତଧାରା', 'ରକ୍ତକରବୀ', 'କାଳେର ଯାତ୍ରା', 'କବିର ଦୀକ୍ଷା' ଓ 'ତାସେର ଦେଶ'ରେ ସଭ୍ୟତାର ସଂଘର୍ଷ, ଏହାର ସଂକଟ ସମସ୍ୟା ଆଦି ତତ୍ତ୍ୱ ନିହିତ । ଏଗୁଡ଼ିକ 'ଅଚଳାୟତନ' ପର୍ଯ୍ୟାୟର ନାଟକ ।

ଶିଳ୍ପବିଧି ଦୃଷ୍ଟିରୁ ରବୀନ୍ଦ୍ରପ୍ରତିଭାର ସ୍ୱରୂପ ସମ୍ବନ୍ଧରେ ଆଲୋଚନା କଲାବେଳେ ତାଙ୍କ ନାଟକର ବିଷୟବସ୍ତୁ ସମ୍ବନ୍ଧରେ ସୂଚନା ଦିଆଯାଇଛି । ବିଷୟ ଦୃଷ୍ଟିରୁ ତାଙ୍କ ନାଟକଗୁଡ଼ିକୁ ତିନି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଗୋଟିଏ ଶ୍ରେଣୀର ନାଟକରେ ମାନବ ହିଁ ରଙ୍ଗମଞ୍ଚର ପାତ୍ର; ଏଥିରେ ପ୍ରକୃତିର ସ୍ଥାନ ନାହିଁ । ଦ୍ୱିତୀୟ ଶ୍ରେଣୀର ନାଟକରେ ମାନବ ରଙ୍ଗମଞ୍ଚର ମୁଖ୍ୟନାୟକ ; ପ୍ରକୃତି ତାର ସଜୀବ ଓ ପ୍ରତୀକାତ୍ମକ ପୀଠିକା । ତୃତୀୟ ଶ୍ରେଣୀର ନାଟକରେ ପ୍ରକୃତି ହିଁ ରଙ୍ଗମଞ୍ଚରେ ମୁଖ୍ୟ ରୂପେ ଦେଖାଯାଏ; ମନୁଷ୍ୟ କେବଳ ପୀଠିକାରେ ରହି କେତେବେଳେ ବ୍ୟାଖ୍ୟାତା, କେତେବେଳେ ଦର୍ଶକ ରୂପେ ରଙ୍ଗମଞ୍ଚକୁ ଆସୁଛି । ତୃତୀୟ ପର୍ଯ୍ୟାୟର ନାଟକଗୁଡ଼ିକୁ ଯଥାର୍ଥରେ ଋତୁନାଟ୍ୟ କୁହାଯାଇପାରେ । 'ଶେଷ ବର୍ଷଣ', 'ବସନ୍ତ', 'ନଟରାଜ-ଋତୁରଙ୍ଗ-ଶାଳା', 'ନବୀନ', 'ଶ୍ରାବଣ ଗାଥା' ଏହି ଶ୍ରେଣୀର ନାଟକ । 'ଫାଲ୍‌ଗୁନି' ଓ 'ଶାରଦୋତ୍ସବ'ରେ ମାନବ ହିଁ ମୁଖ୍ୟ, ପ୍ରକୃତିରଙ୍ଗମଞ୍ଚ ଉପରକୁ ଆସୁଥିଲେ ସୁଦ୍ଧା ଏହା ସଜୀବ ଓ ପ୍ରତୀକାତ୍ମକ ପୀଠିକା । 'ଗୀତୋତ୍ସବ', 'ସୁନ୍ଦର', 'ବର୍ଷାମଙ୍ଗଳ' ତୃତୀୟ ପର୍ଯ୍ୟାୟର ରଚନା । କିନ୍ତୁ ଏଗୁଡ଼ିକୁ ନାଟକ କହିବାକୁ ଦ୍ୱିଧା ହୁଏ । ଏଗୁଡ଼ିକ ବିଶେଷ ବିଶେଷ ଋତୁର ଅଭିନନ୍ଦନ ନିମିତ୍ତ ଲିଖିତ ଓ ସଂକଳିତ ଗୀତର ମାଳା ମାତ୍ର; ଏଥିରେ ନାଟ୍ୟତତ୍ତ୍ୱ ନାହିଁ । ତୃତୀୟ ପର୍ଯ୍ୟାୟର ଅଧିକାଂଶ ନାଟକ ରୂପକପ୍ରଧାନ ଶୈଳୀରେ ରଚିତ । ଏଗୁଡ଼ିକରେ ପ୍ରାଧାନତଃ ପ୍ରକୃତିର ବାଣୀ ଓ ଗୀତ ଦିଆଯାଇଛି ।

ଦ୍ୱିତୀୟ ଶ୍ରେଣୀର ନଅଟି ନାଟକ ହେଉଛି, 'ଅଚଳାୟତନ', 'ବିସର୍ଜନ' 'ଶାରଦୋତ୍ସବ,' 'ଡାକଘର', 'ରକ୍ତ-କରବୀ', 'ରାଜା', 'ଫାଲ୍‌ଗୁନୀ', 'ରାଜା ଓ ରାଣୀ' ଓ ତପତୀ । ଏଗୁଡ଼ିକରେ ବର୍ଷର କୌଣସି ନା କୌଣସି ଋତୁ ସଂଯୋଜିତ ହୋଇଛି । ପ୍ରତ୍ୟେକ ନାଟକର ଭାବଧାରା ସହିତ କୌଣସି ନା କୌଣସି ଋତୁର ଭାବ ସଂଯୁକ୍ତ । ମାନବଜୀବନରେ ଯେଉଁ ଲୀଳାର ବିଳାସ, ପ୍ରକୃତି-ପରିବେଶରେ ସେହି ଭାବର ଲୀଳା ବିଦ୍ୟମାନ । ଏଗୁଡ଼ିକରେ ମାନବ ତଥା ପ୍ରକୃତି ପରସ୍ପରର ପରିପୂରକ ରୂପେ ଅବସ୍ଥିତ । ଏହି ନାଟକଗୁଡ଼ିକରେ ଭାରତୀୟ ଋତୁଚକ୍ର ଦେଖିବାକୁ ମିଳେ— 'ଅଚଳାୟତନ' ଗ୍ରୀଷ୍ମ ବର୍ଷା'; 'ବିସର୍ଜନ' ବର୍ଷା-ଶରତ୍; 'ଶାରଦୋତ୍ସବ', 'ଋଣଶୋଧ' ଶରତପ୍ରାରମ୍ଭ; 'ଡାକଘର୍' ଶରତ ଶେଷ; ରକ୍ତ-କରବୀ ଶୀତକାଳ; 'ରାଜା ଓ ରାଣୀ', 'ରାଜା', ଫାଲ୍‌ଗୁନୀ, 'ତପତୀ' ବସନ୍ତ ।

ରବୀନ୍ଦ୍ରନାଥ ପ୍ରହସନ ମଧ୍ୟ ଲେଖିଛନ୍ତି । ଏଗୁଡ଼ିକରେ ସାମାନ୍ୟ ଓ ଅସାମାନ୍ୟ ପ୍ରକୃତିର ଚରିତ୍ରକୁ ପାଖାପାଖି ରଖି ଘଟଣାଗତ ତଥା ଚରିତ୍ରଗତ ହାସ୍ୟ-ବ୍ୟଙ୍ଗର ସୃଷ୍ଟି କରାଯାଇଛି । 'ଚିରକୁମାର ସଭା', 'ଶେଷରକ୍ଷା', 'ଶୋଧ-ବୋଧ', 'ବୈକୁଣ୍ଠେର ଖାତା', 'ହାସ୍ୟକୌତୁକ', 'ବ୍ୟଙ୍ଗ କୌତୁକ' ଏହି ପର୍ଯ୍ୟାୟର ରଚନା ।

ଶକୁନ୍ତଳା ବିଷୟ ଅବଲମ୍ବନରେ ନୃତ୍ୟ-ନାଟ୍ୟ ରଚନା କରିବା ନିମିତ୍ତ ରବୀନ୍ଦ୍ରନାଥଙ୍କର ପ୍ରବଳ ଆଗ୍ରହ ଥିଲା । କିନ୍ତୁ ତାଙ୍କର ଏହି ଇଚ୍ଛା ଫଳବତୀ ହୋଇ ନ ଥିଲା ।

ନାଟକ କ୍ଷେତ୍ରରେ ରବୀନ୍ଦ୍ର ପ୍ରତିଭାର ସ୍ୱରୂପର ସଂକ୍ଷେପ ରୂପ ଉପରୋକ୍ତ ଆଲୋଚନାରେ ଦିଆଗଲା । ଏଥିରୁ ପ୍ରତୀତ ହେବ ଯେ କି ଶିଳ୍ପବିଧି, କି ଭାବବସ୍ତୁର କି ସଙ୍ଗୀତସଂଯୋଜନା, କି କାବ୍ୟସୌଷ୍ଠବ, କି ମାନବପ୍ରକୃତି, ଅଲୌକିକ ସତ୍ତା ସହ ସମ୍ବନ୍ଧ, ସବୁ ଦୃଷ୍ଟିରୁ ରବୀନ୍ଦ୍ରନାଟକ ବିଶ୍ୱରୂପ, ବ୍ୟାପକ ଭାବର ଦ୍ୟୋତକ, ଯହିଁର ଧ୍ୱନିତ ମୂଳ ସ୍ୱର ହେଉଛି—'ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନୟ' ।

---

# ରବୀନ୍ଦ୍ରନାଥଙ୍କର କେତୋଟି କବିତା

## ନିଦ କଥା

### ଅନୁବାଦ—ଶ୍ରୀ ବିନୋଦ ରାଉତରାୟ

ବୋଉ ଲୋ, ଯେବେ ମୁଁ ନିଦରେ ଶୁଏଇ, ଶୋଇବା ପରେ
ଉଠି ବସି ଭାବେ ଏ କି ଅଘଟଣ ଘଟଇ ଘରେ ?
ଯେତେବେଳେ ମୋତେ ନିଦ ଲାଗିଯାଏ ଶେଯରେ ଶୋଇ
ସେତେବେଳେ ତୁ ତ ହଜିଯାଇଥାଉ ପାଖରେ ଥାଇ ।
ରାତିରେ ଖରାକୁ, ଦିନରେ ତାରାକୁ ପାଏନି ଖୋଜି,
ସେତେବେଳେ ସିଏ ଶୋଇଥିବେ ବୋଧେ ନୟନ ବୁଜି ।
କନକ ଚମ୍ପା ତ ଶୀତଦିନେ କେବେ ମିଳେନି ଗନ୍ଧେ,
ନିଜ ଘରେ ସିଏ ଶୋଇଥାଏ ଲୁଚି, ଲୁଚି କି ପଛେ ।
ରାଜାଝିଅ ଥାଏ ଆମ କୋଠାତଳ ସିଡ଼ିର ଘରେ
ଖଇ କହନ୍ତୁ ତ ଦେଖାଇ ଦେଏ ତୁ ମୋତେ ରେ ଥରେ ।
ତୁହି କି ଜାଣୁ ନା ରାଜାଝିଅ ମୋର ନିଦରେ ଥାଏ
ସପନ କୋଠାର ରାଣୀହଂସପୁରେ; କିଏ ସେ ପାଏ ।
ବୋଉ ଲୋ, ନିଦର ଉଡ଼ୁଆଲୋ ଅଛି କେତେକ ଚିଜ
ମୁହିଁ ଜାଣେ ତାହା, ତୁହି କି ସେଗୁଡ଼ା ଜାଣିବୁ ଆଜି ।
ରାତି ପାହିଯିବ ଯେଉଁ ଦିନ ସିଏ ଉଠିବେ ନିଦୁଁ
ଘରକୁ ଆମର ଜାକଜମକରେ ଆସିବେ ବନ୍ଧୁ ।
"ନାପିତ ଖଇ" ଓ "ଶିଆଳ ଖଇ" ମୋ ଆସିଲେ ଘରେ
ତୁ କିସ କରିବୁ ସେ ଭିଡ଼ ଭିତରେ କହ ତ ଥରେ ?
ଶୁଣ ଯେତେବେଳେ ଶୋଇପଡ଼ିବୁ ତୁ, ମୁହିଁ ଚେଇଁବି
ନାନା ପରକାରେ ଭୁଲାଇ ଭୁଲାଇ ଖେଳ ଖେଳିବି ।
ତାହା ପରେ ଯେବେ ଉଠିବୁ ନିଦରୁ, ଶୋଇବେ ସିଏ
ସବୁ ଶୁନ୍‌ଶାନ୍‌ ରହିଥିବେ ଯାଇଁ କେଉଁଠି କିଏ ?

—ଘୁମେର ତତ୍ତ୍ୱ

# ବିଦାୟ

ବୋଉ ଲୋ, ବିଦାୟ ଦିଅ ମୋତେ ଏବେ ଯାଉଛି ମୁହିଁ
ସକାଳୁ ଉଠି ତୁ ଖୋଜିଲେ କହିବ, "ନାହିଁ ମୁଁ ନାହିଁ ।"
ପବନ ସାଥିରେ ପବନ ପାଲଟି ଗୃହରେ ତୋର
ଖେଳିବି ହାତରେ ପାରିବୁ କି ଧରି ଦେହକୁ ମୋର ?
ପାଣି ଭିତରେ ମୁଁ ଢେଉ ହୋଇ ହୋଇ କାଟିବି ବେଳ
ଗାଧୋଇଲା ବେଳେ ତୋହର ସାଥିରେ ଖେଳିବି ଖେଳ ।
ମେଘୁଆ ରାତିରେ କଥା ମୋର ଭଳା ଥିବୁ ଲୋ ଶୋଇ
ଶାଳ ବଣମାଳେ ବରଷୁଥିବି ମୁଁ ବରଷା ହୋଇ ।
ଝରକା ଦେଇ ଏ ମେଘରୁ ମେଞ୍ଚାଏ ବରଷା ଛୁଟି
ଆସିଲେ ଘରକୁ ମନେ ପଡ଼ିବ ମୋ ସଜ ହସଟି ।
ଯଦି ବା ମୋ ଲାଗି ବେଶି ରାତି ଯାଏଁ ଚେଇଁବୁ ବସି,
ତାରା ହୋଇ ତୋତେ ଶୋଇବା ପାଇଁ କି କହିବ ହସି ।
ଶୋଇ ପଡ଼ିଲେ ତୁ କିରଣ ହୋଇ ମୁଁ ଆସିବି ଘରେ
ଧୀରେ ଅତି ଧୀରେ ଛୁଇଁ ଛୁଇଁ ଯିବି ପତା ଉପରେ ।
ସପନ ହୋଇଣ ଦୁଇ ଆଖି ଭରି ଦେଖିବି ତୋତେ
ସେତେବେଳେ କଣ ଠଉରାଇ ତୁହି ପାରିବୁ ମୋତେ ?
ଚେଇଁଉଠି ତୁହି ଅଣ୍ଡାଳି ଦେଖିବୁ ପାଖରେ ନାହିଁ,
କେଉଁଠି ଆସି ମୁଁ ମିଳାଇଥିବି ଲୋ କୁଆଡ଼େ ଯାଇଁ ?
ପୂଜାବେଳ ହେଲେ ସାଥିପିଲାମାନେ ଖୋଜିବେ ଯେବେ
ତୋ ପାଖେ ଦୂରୁ ମୁଁ ଆକାଶୀ ବଇଁଶୀ ବାଇବି ତେବେ ।
ମାଉସୀ ଯଦି ତା "ପୂଜା-ଡ଼ାଲି" ଯେନ ପଚ୍ଛରେ ଆସି,
କହିବୁ, "ପୁଅ ମୋ ଯାଇଅଛି ଆଖି, ଗୃହରେ ମିଶି ।"

—ବିଦାୟ

# ହୋଇବି ପାରି

ବୋଉ ଲୋ, ଦେଖିଲୁ କଳା ବଉଦରେ ଆକାଶ ଘୋଟ
ସାତ ସମୁଦର ତେର ନଈ ଆଜି ହୋଇବ ପାର ।
କପିଳା ନାହିଁ ଲୋ, କୁନିଆ ନାହିଁ ଲୋ, ହରିଆ ନାହିଁ,
ଘୋଡ଼ା ହେବା ଲାଗି ସ୍ୱରୁଚ କାହାକୁ ଡାକିବ ଯାଇଁ ?
ବାପାଙ୍କ ଖାତାରୁ ଚିରି ଆଣିଛି ଲୋ କାଗଜସବୁ
ମୋତେ ପରା ଭୁଦ୍ଧି ଭଲ ଡଙ୍ଗାଟିଏ ବନାଇ ଦେବୁ ।
ବାପା ଯେବେ ଆସି ରାଗ କରିବେ ଲୋ, ଦିଲ୍ଲୀରୁ ଫେରି
ସେତେବେଳେ ମୁଁ ତ ଚାଲିଯାଇଥିବି ଦରିଆ ପାରି ।
ସବୁବେଳେ କ'ଣ ଏତେ କାମ କରୁ ଆଜିକି ଥାଉ,
ବାପାଙ୍କ ପାଖକୁ ଚିଠି ଲେଖିବାଟା ଆଜି ନ ହେଉ ।
ଚିଠି ଲେଖା ଥାଉ, ଆଗ କରିଦେଏ ମୋହରି କାମ
ବାପାଙ୍କ ପାଖକୁ ଦେବୁ ଲେଖି ଦେଇ ତୋହରି ନାମ ।
ଇଏ ମୋର ପରା ଅସଲ କାମ ଲୋ ବୁଝୁନୁ କିଆଁ,
ଡେରି କରିଦେଲେ ଦେଖିବୁ ରାଗରେ ହୋଇବି ନିଆଁ ।
ମେଘ ଚାଲିଗଲା, ଖରା ପଡ଼ିଲାଣି, ବରଷା ନାହିଁ;
ସାତ ସମୁଦର ତେର ନଈ ମୁହିଁ ଯିବି ବା କାହିଁ ?

---

—ସମବ୍ୟଥୀ

# ହୋଇଥାନ୍ତି ଯଦି

ବୋଉ ଲୋ, ମୁଁ ତୋର ହୋଇଥାନ୍ତି ଯଦି କୁକୁରଛୁଆ
ସତ କରି କହ ଘଟନ୍ତା ନାହିଁ କି କଥାଏ ନୂଆ ?
ପଛେ ପଛେ ଯାଇ ଖାଇଲା ପତ୍ରରେ ବୋଉ ଲୋ ତୋର,
ଦିଅନ୍ତ ନାହିଁ କି ଅସନା ମୁହଁଟି ଲଗାଇ ମୋର ?

ସେତେବେଳେ ତୁ ତ ଦୂର୍ ଦୂର୍ କହି ପିଟନ୍ତୁ ମୋତେ,
ଖାଇବ ନାହିଁ ମୁଁ ହାତରେ ମୋହର କହୁଛୁ ତୋତେ !
ବୋଉଲୋ, ମୁଁ ତୋର ହୋଇଥାନ୍ତି ଯଦି ପଞ୍ଜୁରୀ-ଶୁଆ,
ସତକରି କହ ପଟନ୍ତା କାହିଁ କି ଏକଥା ନୂଆ ?
ଉଡ଼ି ପଳାଇବ କାଲେ ମୁହିଁ ଗ୍ରୁର ପଞ୍ଜୁରୀ କାଟି,
ସେଥିଲାଗି ପାଦେ ଲୁହାର କଡ଼ିଆ ଦେଇନ୍ତ ଆଣି ।
କହନ୍ତୁ ତ ରାଗି "ହତଭାଗା ପକ୍ଷୀ ପଳାଏ ଖାଲି"
ଛାଡ଼ିଦେଏ ବୋଉ "ଦୂର ବନସ୍ତକୁ ଯାଏ ମୁଁ ଚାଲି ।"

— ସମବ୍ୟଥୀ

——

## ଲୁଚକାଳି ଖେଳ

ବୋଉ ଲୋ, ମୁଁ ଯଦି ଚଗଲମି କରି ଛଇନା ଗଛରେ
ସନ୍ଧ୍ୟା-ସକାଳୁଆ ଚମ୍ପାଫୁଲ ହୋଇ ଫୁଟନ୍ତ ଥରେ,
ସେତେବେଳେ ମୋତେ ଚିହ୍ନି ନ ପାରିବୁ ଖୋଜିବୁ ଖାଲି
ମୁରୁକି ହସି ମୁଁ ଗହଳ ପତରେ ପାରିବ ଗାଲି ।

ଯେତେବେଳେ ଯେଉଁ ଘରର ପାଇଟି ତୁଲାଉଥିବୁ
କଅଁଳ ପତରେ ଦେଖୁଥିବ ଲୁଚ, ଲୁଚ ମୁଁ ସବୁ ।
ଗାଧୋଇ ଆସି ତୁ ଦୀଅଁ ପୂଜିଗଲେ ଠାକୁର ଘରେ
ଚହଟ ବାସନା ମହକୁ ଥିବ ସେ ଘର ଭିତରେ ।
ସେତେବେଳେ କିଏ ଜାଣିପାରିବୁ କି ବୋଉଲୋ ମୋର
ତୋହରି ପୁଅର ବାସନା ବାଜୁଛି ଦେହରେ ତୋର ।
ଖରାବେଳେ ସବୁ ଯାଇଛି ଉଠାଇ 'ଭାରତ' ନେଇ
ବସିଗଲେ ପଢ଼ି ଘର ଭିତରେ ଲୋ ମନ ଲଗାଇ;
ଝରକା ବାଟରେ ଟିକି ଟିକି ଛାଇ ବହି ଉପରେ
ହଲାଇବ ମୋର ଚୋଲା ପତରର ଖୋଲ ଭିତରେ ।

ସେତେବେଳେ କ'ଣ ଜାଣିପାରବୁ ଏ ବୋଉ ଲୋ ମୋର
ତୋହର ପୁଅର କୁନ ଗୁଞ୍ଜ ନାଚେ ଆଗରେ ତୋର ।
ସଞ୍ଜବେଳେ ବୋଉ ଗୁହାଳକୁ ଗଲେ ବଳିତା ଧରି
ଫୁଲ ଝେଲ ଖେଳ ମାଟି ଉପରେ ମୁଁ ପଡ଼ିବ ଝରି ।
ପୁଣି ତୋର ପୁଅ ପାଲଟି ଯାଇ ମୁଁ କରିବ ଅଳି
କାହାଣୀ କହ ରୁ ପାଖେ ପାଖେ ତୋର କାନକୁ ଧରି ।
ସେତେବେଳେ ମୋତେ ପଚାରବୁ ଦୁଷ୍ଟ ଥିଲୁ ରେ କାହିଁ,
କହିବ କେବଳ ଯହିଁ ଥିଲ ତୋତେ କହିବ ନାହିଁ ।

---

# କାବ୍ୟରେ ଉପେକ୍ଷିତା

## ଅନୁବାଦ—ଶ୍ରୀମତୀ କମଳା ସାହୁ

କବି ତାଙ୍କର କଳ୍ପନା-ଉତ୍ସର ଯେତେ କରୁଣା-ବାରି ସମସ୍ତ କେବଳ ଜନକ-ତନୟାର ପୁଣ୍ୟ ଅଭିଷେକରେ ନିଃଶେଷ କରିଅଛନ୍ତି । କିନ୍ତୁ ଆଉ ଯେଉଁ ଜଣକ ମ୍ଲାନମୁଖୀ, ଇନ୍ଦ୍ରଜଗତର ସମସ୍ତ ସୁଖରୁ ବଞ୍ଚିତ ରାଜବଧୂ ସୀତାଦେବୀଙ୍କ ଛାୟା ତଳେ ଅବଗୁଣ୍ଠିତ ହୋଇ ରହି ହୋଇଛନ୍ତି, କବି-କମଣ୍ଡଳରୁ ଏକ ବିନ୍ଦୁ ଅଭିଷେକ-ବାରି କି କାହିଁକି ତାହାଙ୍କର ଚିର ଦୁଃଖାଭିତପ୍ତ ନମ୍ର-ଲଲାଟରେ ସିଞ୍ଚିତ ହେଲା ନାହିଁ ? ଆହା ଅବ୍ୟକ୍ତ-ବେଦନା ଦେବୀ ଊର୍ମିଳା ! ତୁମେ ପ୍ରଭାତର ନକ୍ଷତ୍ର ଭଳି ମହାକାବ୍ୟର ସୁମେରୁ ଶିଖରରେ ଥରେ ମାତ୍ର ଉଦିତ ହୋଇଥିଲ । ତା'ପରେ ଅରୁଣାଲୋକରେ ଆଉ ତୁମକୁ ଦେଖିହେଲା ନାହିଁ । କେଉଁଠି ତୁମର ଉଦୟାଚଳ, କେଉଁଠି ତୁମର ଅସ୍ତଶିଖର, ତାହା ନିର୍ଣ୍ଣୟ କରିବାକୁ ମଧ୍ୟ ସମସ୍ତେ ଭୁଲିଗଲେ । କବିକର୍ତ୍ତୃକ କାବ୍ୟ ସଂସାରରେ ଏଇଭଳି ଜଣେ ଦୁଇ ଜଣ ନାରୀ ସମ୍ପୂର୍ଣ୍ଣ ଉପେକ୍ଷିତ ହୋଇ କି ଅମରଲୋକରୁ ଭ୍ରଷ୍ଟ ହୋଇନାହାନ୍ତି । ପକ୍ଷପାତ କୃପଣ କାବ୍ୟ ସେମାନଙ୍କ ପାଇଁ ସ୍ଥାନ ସଂକୋଚ କରିଛି ବୋଲି ପାଠକର ହୃଦୟ ଅଗ୍ରସର ହୋଇ ସେମାନଙ୍କୁ ଆସନ ଦାନ କରେ । କିନ୍ତୁ ଏଇ କବି-ପରିତ୍ୟକ୍ତା-ମାନଙ୍କ ମଧ୍ୟରୁ କାହାକୁ କେଉଁ ହୃଦୟରେ ଆଶ୍ରୟ ଦେବେ, ତାହା ପାଠକବିଶେଷର ପ୍ରକୃତି ଏବଂ ଅଭିରୁଚି ଉପରେ ନିର୍ଭର କରେ । ମୁଁ କହିପାରେ, ସଂସ୍କୃତ ସାହିତ୍ୟରେ କାବ୍ୟ-ଯଜ୍ଞଶାଳାର ପ୍ରାନ୍ତଭୂମିରେ ଯେଉଁ କେତୋଟି ଅନାଦୃତା ସହିତ ମୋର ପରିଚୟ ଘଟିଛି, ସେମାନଙ୍କ ମଧ୍ୟରୁ ଊର୍ମିଳାକୁ ମୁଁ ପ୍ରଧାନ ସ୍ଥାନ ଦିଏ । ମନେହୁଏ ତାହାର ଏକ କାରଣ—ଏପରି ମଧୁର ନାମ ସଂସ୍କୃତ କାବ୍ୟରେ ଆଉ ଦ୍ୱିତୀୟ ନାହିଁ । ନାମକୁ ଯେଉଁମାନେ ନାମ ମାତ୍ର ମନେ କରନ୍ତି, ମୁଁ ସେମାନଙ୍କ ଦଳରେ ନୁହେ । ସେକ୍ସପିୟର କହିଛନ୍ତି—ଗୋଲାପକୁ ଯେ କୌଣସି ନା ଦିଆଯାଉ, ତାହାର ମାଧୁର୍ଯ୍ୟରେ ତାରତମ୍ୟ ଦେଖାଯାଏ ନାହିଁ । ଗୋଲାପ ସମ୍ବନ୍ଧରେ ହୁଏ ତ ତାହା ପ୍ରଯୁଜ୍ୟ । କାରଣ ଗୋଲାପର ମାଧୁର୍ଯ୍ୟ ସଂକୀର୍ଣ୍ଣ ସୀମାବଦ୍ଧ । ତାହା କେବଳ ଗୋଟାକେତେ ସୁସ୍ପଷ୍ଟ ପ୍ରତ୍ୟକ୍ଷଗମ୍ୟ ଗୁଣ ଉପରେ ନିର୍ଭର କରେ ।

ଅନେକ ସୂକ୍ଷ୍ମ ସୁକୁମାରତାର ସମାବେଶ ହେତୁ ମନୁଷ୍ୟର ମାଧୁର୍ଯ୍ୟ ଅନିର୍ବଚନୀୟ । କେବଳ ଇନ୍ଦ୍ରିୟଦ୍ୱାରା ଆମେ ତାହା ପାଉନା, କଳ୍ପନାଦ୍ୱାରା ସୃଷ୍ଟି କରିଥାଉ । ନାମ ସେହି ସୃଷ୍ଟି କାର୍ଯ୍ୟରେ ସହାୟତା କରିଥାଏ । ମନେ କରନ୍ତୁ—ଦ୍ରୌପଦୀର ନାମ 'ଦ୍ରୌପଦୀ' ନ ହୋଇ ହୋଇଛି ଉର୍ମିଳା । ତେବେ ଏହି ତରୁଣ କୋମଳ ନାମଟିଦ୍ୱାରା ସେହି ପଞ୍ଚସ୍ୱାମୀ-ଗର୍ବିତା କ୍ଷତ୍ରିୟ ନାରୀର ଦୀପ୍ତ ତେଜ ପଦେ ପଦେ ଖଣ୍ଡିତ ହେଉ ନାହିଁ କି ? ଅତଏବ ଏହି ନାମଟି ପାଇଁ ବାଲ୍ମୀକିଙ୍କ ନିକଟରେ ଆମେ କୃତଜ୍ଞ । କବିଗୁରୁ ଏହା ପ୍ରତି ଅନେକ ଅବିଚାର କରିଛନ୍ତି; କିନ୍ତୁ ଦୈବାତ୍ ଏହାର ନାମ ଯେ ମାଣ୍ଡବୀ କିମ୍ବା ଶ୍ରୁତକୀର୍ତ୍ତି ରଖି ନାହାନ୍ତି, ତାହା ବିଶେଷ ସୌଭାଗ୍ୟ । ମାଣ୍ଡବୀ ଓ ଶ୍ରୁତକୀର୍ତ୍ତି ସମ୍ବନ୍ଧରେ ଆମେ କିଛି ଜାଣିନାହୁଁ, ଜାଣିବାର କୌତୂହଳ ମଧ୍ୟ ନାହିଁ ।

ଉର୍ମିଳାକୁ କେବଳ ଆମେ ଦେଖିଲୁ ବଧୂବେଶରେ, ବିଦେହ ନଗରୀର ବିବାହ ସଭାରେ । ତା ପରେ ଯେବେଠାରୁ ସେ ରଘୁରାଜକୁଳର ସୁବିପୁଳ ଅନ୍ତଃପୁର ମଧ୍ୟରେ ପ୍ରବେଶ କରିଛି, ସେହି ଦିନରୁ ଆଉ କେବେ କାହାକୁ ଦେଖିଅଛୁ ବୋଲି ମନେ ହୁଏ ନାହିଁ । ତାହାର ସେହି ବିବାହସଭାର ବଧୂବେଶର ଛବିଟି ମନରେ ରହିଗଲା । ଉର୍ମିଳା ଚିରବଧୂ—ନିର୍ବାକ୍ କୁଣ୍ଠିତା, ନିଃଶବ୍ଦଚାରିଣୀ । ଭବଭୂତିଙ୍କ କାବ୍ୟରେ ତାର ସେହି ଛବିଟି ମୁହୂର୍ତ୍ତିଟିଏ ପାଇଁ ପ୍ରକାଶିତ ହୋଇଥିଲା । ସୀତା କେବଳ ଥରେ ମାତ୍ର ସସ୍ନେହ କୌତୁକରେ ତାହା ଉପରେ ଆଙ୍ଗୁଳି ରଖି ଦିଅରଙ୍କୁ ପଚାରିଥିଲେ—"ବତ୍ସ, ଏ କିଏ ?" ଲକ୍ଷ୍ମଣ ଲଜ୍ଜାପୂର୍ଣ୍ଣ ହାସ୍ୟରେ ମନେ ମନେ କହିଲେ, "ଓହୋ, ଆର୍ଯ୍ୟା ! କ'ଣ ଉର୍ମିଳାର କଥା ପଚାରୁଛନ୍ତି ?" ଏହା କହି ତତ୍‌କ୍ଷଣାତ୍ ଲଜ୍ଜାରେ ସେ ଛବି ଢାଙ୍କି ପକାଇଥିଲେ । ତା'ପରେ ରାମଚନ୍ଦ୍ରଙ୍କର ଏତେ ବିଚିତ୍ର ସୁଖଦୁଃଖ ଚିତ୍ରଶ୍ରେଣୀ ମଧ୍ୟରେ ଆଉ ଥରେ ହେଲେ ବି କାହାର କୌତୂହଳ-ଆଙ୍ଗୁଳି ଏହି ଛବି ଉପରେ ପଡ଼ିଲା ନାହିଁ । ସେ କେବଳ ମାତ୍ର ବଧୂ ଉର୍ମିଳା ।

ତରୁଣ ଶୁଭ୍ର ଲଲାଟରେ ଯେଉଁ ଦିନ ପ୍ରଥମ ସିନ୍ଦୂର ବିନ୍ଦୁଟି ପିନ୍ଧିଥିଲା, ଉର୍ମିଳା ଚିରକାଳ ସେହି ଦିନର ନବବଧୂ । କିନ୍ତୁ ରାମଙ୍କର ଅଭିଷେକ-ମଙ୍ଗଳା-ଚରଣର ଆୟୋଜନରେ ଯେଉଁ ଦିନ ଅନ୍ତଃପୁରିକାଗଣ ବ୍ୟସ୍ତ ଥିଲେ, ସେହି ଦିନ ଏହି ବୋହୂଟି କ'ଣ ସୀମନ୍ତ ଉପରେ ଅର୍ଦ୍ଧାବଗୁଣ୍ଠନ ଟାଣି ରଘୁକୁଳଲକ୍ଷ୍ମୀର ସଦ୍ୟହିତ ପ୍ରସନ୍ନ କଲ୍ୟାଣ ମୁଖରେ ମାଙ୍ଗଲ୍ୟ ରଚନାରେ ନିରବଚ୍ଛିନ୍ନ ବ୍ୟସ୍ତ ନ ଥିଲା ? ଆଉ ଯେଉଁ ଦିନ ଅଯୋଧ୍ୟାକୁ ଅନ୍ଧକାର କରି ଦୁଇ କିଶୋର ରାଜଭ୍ରାତା ସୀତା ଦେବୀଙ୍କ ସଙ୍ଗରେ ଘେନି ତପସ୍ୱୀ ବେଶରେ ରାସ୍ତାକୁ ବାହାରିଲେ, ସେ ଦିନ ବଧୂ ଉର୍ମିଳା ରାଜ-ହର୍ମ୍ୟର କେଉଁ ନିଭୃତ ଶୟନକକ୍ଷରେ, ଧୂଳିଶଯ୍ୟାରେ ବୃନ୍ତଚ୍ୟୁତ ମୁକୁଳଟି ଭଳି ଲୁଣ୍ଠିତ ହୋଇ ପଡ଼ିଥିଲା, ତାହା କି କେହି ଜାଣନ୍ତି ? ସେ ଦିନର ସେ ବିଶ୍ୱବ୍ୟାପୀ

ବିଳାପ ମଧ୍ୟରେ ଏଇ ବଦୀର୍ଣ୍ଣାୟମାନ କ୍ଷୁଦ୍ର କୋମଳ ହୃଦୟର ଅସହ୍ୟ ଶୋକ କିଏ ଦେଖିଥିଲା ? ଯେଉଁ ଋଷିକବି କ୍ରୌଞ୍ଚ ବିରହିଣୀର ବୈଧବ୍ୟ ଦୁଃଖ ମୁହୂର୍ତ୍ତକ ପାଇଁ ସହ୍ୟ କରିପାରି ନ ଥିଲେ, ସେ ମଧ୍ୟ ଥରେ ଚାହିଁ ଦେଖିଲେ ନାହିଁ ।

ଲକ୍ଷ୍ମଣ ରାମଙ୍କ ପାଇଁ ସବୁ ପ୍ରକାର ଆତ୍ମତ୍ୟାଗ ସାଧନ କରିଥିଲେ । ସେ ଗୌରବ ଭାରତବର୍ଷର ଗୃହେ ଗୃହେ ଆଜି ଘୋଷିତ ହେଉଛି । କିନ୍ତୁ ସୀତାଙ୍କ ପାଇଁ ଊର୍ମିଳାର ଆତ୍ମବିଲୋପ କେବଳ ସଂସାରରେ ନୁହେଁ, କାବ୍ୟରେ ମଧ୍ୟ ଘୋଷିତ । ଲକ୍ଷ୍ମଣ ତାଙ୍କର ଦେବତା ଯୁଗଳଙ୍କ ପାଇଁ କେବଳ ନିଜକୁ ଉତ୍ସର୍ଗ କରିଥିଲେ ଊର୍ମିଳା ନିଜଠାରୁ ଅଧିକ ନିଜର ସ୍ୱାମୀଙ୍କୁ ଉତ୍ସର୍ଗ କରିଥିଲେ । ସେ କଥା କାବ୍ୟରେ ଲେଖା ହେଲା ନାହିଁ । ସୀତାଙ୍କ ଅଶ୍ରୁରେ ଊର୍ମିଳା ସଂପୂର୍ଣ୍ଣ ଲିଭିଗଲା ।

ଲକ୍ଷ୍ମଣ ବାର ବର୍ଷ ଧରି ନିଜର ଉପାସ୍ୟ ପ୍ରିୟଜନଙ୍କର ପ୍ରିୟ କାର୍ଯ୍ୟରେ ନିଯୁକ୍ତ ଥିଲେ । ନାରୀଜୀବନର ସେଇ ବାରୋଟି ଶ୍ରେଷ୍ଠ ବର୍ଷ ଊର୍ମିଳାର କିପରି କଟିଲା । ସଲଜ୍ଜ ନବପ୍ରେମରେ ଆମୋଦିତ ବିକାଶୋନ୍ମୁଖ ହୃଦୟ-ମୁକୁଳଟି ଯେବେ ସ୍ୱାମୀ ସହ ଯେତେବେଳେ ପ୍ରଥମ ମଧୁରତମ ପରିଚୟର ଆରମ୍ଭ ସମୟ, ସେଇ ମୁହୂର୍ତ୍ତରେ ଲକ୍ଷ୍ମଣ ସୀତା ଦେବୀଙ୍କର ରକ୍ତଚରଣକ୍ଷେପ ପ୍ରତି ନତଦୃଷ୍ଟି ରଖି ବନକୁ ଗଲେ, ଯେତେବେଳେ ଫେରିଲେ ସେତେବେଳେ ନବବଧୂର ସୁଚିର ପ୍ରଣୟାଲୋକ-ବଞ୍ଚିତ ହୃଦୟରେ ଆଉ କି ସେଇ ନବୀନତା ଥିଲା ? କାଳେ ସୀତାଙ୍କ ସହିତ ଊର୍ମିଳାର ପରମ ଦୁଃଖ କେହି ତୁଳନା କରିଦ, ସେଇ ଭୟରେ କି କବି ସୀତାଙ୍କର ସ୍ୱର୍ଣ୍ଣମନ୍ଦିରରୁ ଏଇ ଶୋକୋଜ୍ଜ୍ୱଳ ମହାଦୁଃଖିନୀକୁ ସଂପୂର୍ଣ୍ଣ ବାହାର କରି ଦେଇଛନ୍ତି— ଜାନକୀଙ୍କର ପାଦପୀଠ ପାର୍ଶ୍ୱରେ ମଧ୍ୟ ବସାଇବାକୁ ସାହସ କରିନାହାନ୍ତି ?

ସଂସ୍କୃତ କାବ୍ୟରେ ଆଉ ଦୁଇଟି ତପସ୍ୱିନୀ ଆମ ହୃଦୟକ୍ଷେତ୍ରରେ ତପୋବନ ରଚନାକରି ବାସ କରିଛନ୍ତି—ପ୍ରିୟମ୍ବଦା ଓ ଅନସୂୟା । ସେମାନେ ସ୍ୱାମୀଗୃହଗାମିନୀ ଶକୁନ୍ତଳାକୁ ବିଦାୟଦେଇ ପଥ ମଧ୍ୟରୁ କାନ୍ଦି କାନ୍ଦି ଫେରିଆସିଲେ; ନାଟକରେ ଆଉ ପ୍ରବେଶ କଲେ ନାହିଁ । ଏକାବେଳକେ ଆମ ହୃଦୟ ମଧ୍ୟରେ ଆସି ଆଶ୍ରୟ ଗ୍ରହଣ କଲେ ।

ଜାଣେ, କାବ୍ୟ ମଧ୍ୟରେ ସମସ୍ତଙ୍କର ସମାନ ଅଧିକାର ରହେ ନାହିଁ । କଠିନ-ହୃଦୟ କବି ନିଜର ନାୟକ-ନାୟିକାଙ୍କ ପାଇଁ କେତେ ଅକ୍ଷୟ ପ୍ରତିମା ଗଢ଼ି ନିର୍ମମ ଚିତ୍ତରେ ବିସର୍ଜନ ଦିଅନ୍ତି । କିନ୍ତୁ ଯେଉଁଠି ଯାହାକୁ କାବ୍ୟର ପ୍ରୟୋଜନ ତୃପ୍ତି ନିଃଶେଷ କରିଦିଅନ୍ତି, ସେଇଠି କଣ ତାର ସଂପୂର୍ଣ୍ଣ ଶେଷ ହୁଏ ? ଦପ୍ତରୋଷ ଋଷି ଶିଷ୍ୟାଦ୍ୱୟ ଏବଂ ହତ ବୁଦ୍ଧି ଶାରୁଦ୍ୟମାନା ଗୌତମୀ ଯେତେବେଳେ ତପୋବନରୁ ଫେରିଆସି ଉତ୍ସୁକ ଉତ୍କଣ୍ଠିତ ସଖୀ ଦୁହିଁଙ୍କୁ ବିଜୟବାର୍ତ୍ତାର ବୃତ୍ତାନ୍ତ ଜଣାଇଲେ, ସେତେବେଳେ ସେମାନଙ୍କର କ'ଣ ହେଲା, ସେ କଥା ଶକୁନ୍ତଳା ନାଟକ ପକ୍ଷରେ ସମ୍ପୂର୍ଣ୍ଣ ଅନାବଶ୍ୟକ । କିନ୍ତୁ, 'ତା' ବୋଲି କଣ ସେଇ ଅକଥିତ ଅଶେଷ ବେଦନା

ସେଇଠି ଶେଷ ହୋଇଗଲା ? ଆମର ହୃଦୟ ମଧ୍ୟରେ ବ ବନାନ୍ତରେ, ବନାଶ୍ରମରେ ଆଉ ତାହା ତରଙ୍ଗିତ ହେଲା ନାହିଁ ?

କାବ୍ୟ ସମ୍ବନ୍ଧରେ ପଣ କଠିନ । ଯେତେବେଳେ ଭାବ ଦେଖେଁ—ପ୍ରିୟମ୍ବଦା ଅନସୂୟା ଶକୁନ୍ତଳାର କେତେ ନିକଟ ଥିଲେ, ସେତେବେଳେ ସେଇ କଣ୍ଵଦୁହିତାର ପରମତମ ଦୁଃଖ ସମୟରେ ସେଇ ସଖୀଙ୍କୁ ପୂର୍ଣ୍ଣ ଅନାବଶ୍ୟକ ଅପବାଦ ଦେଇ ସମ୍ପୂର୍ଣ୍ଣରୂପେ ବର୍ଜନ କରିବା, କାବ୍ୟ ପକ୍ଷରେ ନ୍ୟାୟସଙ୍ଗତ ହୋଇପାରେ, କିନ୍ତୁ ତାହା ନିରତିଶୟ ନିଷ୍ଠୁର ।

ଶକୁନ୍ତଳାର ସୁଖ ସୌନ୍ଦର୍ଯ୍ୟ ଗୌରବ ଗରିମା ବୃଦ୍ଧି କରିବା ପାଇଁ ଏହି ଦୁଇଟି ଲାବଣ୍ୟ ପ୍ରତିମା ନିଜର ସମସ୍ତ ଦେଇ ତାହାକୁ ବେଷ୍ଟନ କରିଥିଲେ । ଛୋଟି ସଖୀ ଯେତେବେଳେ ଜଳ କଳସୀ ଧେନ ଅକାଳବିକଶିତ ନବମାଳତୀ ତଳେ ଆସି ଠିଆହେଲେ, ସେତେବେଳେ ଦୁଷ୍ମନ୍ତ କ ଏକା ଶକୁନ୍ତଳାକୁ ଭଲ ପାଇଥିଲେ ? ସେତେବେଳେ ହାସ୍ୟକୌତୁକରେ ନବ ଯୌବନର ବିଲୋଳ ମାଧୁର୍ଯ୍ୟରେ କିଏ ଶକୁନ୍ତଳାକୁ ସମ୍ପୂର୍ଣ୍ଣ କରିଥିଲ ?—ଏହି ଦୁଇଟି ତାପସୀ ସଖୀ । ଏକା ଶକୁନ୍ତଳା ଶକୁନ୍ତଳାର ଏକତୃତୀୟାଂଶ । ଶକୁନ୍ତଳାର ଅଧିକ ଅଂଶ ଅନସୂୟା ଓ ପ୍ରିୟମ୍ବଦା, ଶକୁନ୍ତଳା ସବୁଠାରୁ ଅଳ୍ପ । ବାରଣ ପ୍ରେମାଳାପ ତ ସେମାନେ ସୁନ୍ଦରରୂପେ ସମ୍ପନ୍ନ କରିଥିଲେ । ତୃତୀୟ ଅଙ୍କରେ ଯେଉଁଠି ଏକାକିନୀ ଶକୁନ୍ତଳା ସହିତ ଦୁଷ୍ମନ୍ତଙ୍କର ପ୍ରେମାକୁଳତା ବର୍ଣ୍ଣିତ, ସେଇଠି କବି ଅନେକ ସ୍ଥାନବଳ ହୋଇଛନ୍ତି—କୌଣସି ପ୍ରକାରେ ଶୀଘ୍ର ଗୌତମୀକୁ ଆଣି ସେ ରକ୍ଷା ପାଇଲେ; କାରଣ ଶକୁନ୍ତଳାକୁ ଯେଉଁମାନେ ଆବୃତ କରି ସଂପୂର୍ଣ୍ଣ କରିଥିଲେ, ସେମାନେ ସେଠାରେ ନ ଥିଲେ । ବୃନ୍ତଚ୍ୟୁତ ଫୁଲ ଉପରେ ଦିବସର ସମସ୍ତ ପ୍ରଖର ଆଲୋକ ସହ୍ୟ ହୁଏ ନାହିଁ; ବୃନ୍ତର ବନ୍ଧନ ଏବଂ ପଲ୍ଲବର ଈଷତ୍ ଅନ୍ତରାଳ ଛଡ଼ା ସେ ଆଲୋକ ତାହା ଉପରେ ସେପରି କମନୀୟ କୋମଳ ଭାବରେ ପଡ଼େ ନାହିଁ । ନାଟକର ଏଇ କେତୋଟି ପଦରେ ସଖୀ ବିରହିଣୀ ଶକୁନ୍ତଳା ଏତେ ସୁସ୍ପଷ୍ଟ ରୂପେ ଅସହାୟ, ଅସମ୍ପୂର୍ଣ୍ଣ, ଅନାବୃତ ଭାବରେ ଦେଖାଦିଏ ଯେ ତାହା ଆଡ଼କୁ ଭଲକରି ଚାହିଁବାକୁ ସଂକୋଚ ଲାଗେ । ମଝିରେ ଆର୍ଯ୍ୟା ଗୌତମୀଙ୍କର ଆକସ୍ମିକ ଆବିର୍ଭାବରେ ପାଠକ-ମାନେ ମନେ ମନେ ଆରାମ ପାଇଥା'ନ୍ତି ।

ମୁଁ ମନେକରେ, ରାଜସଭାରେ ଦୁଷ୍ମନ୍ତ ଶକୁନ୍ତଳାକୁ ଯେ ଚିହ୍ନି ପାରିଲେ ନାହିଁ, ତାହାର ପ୍ରଧାନ କାରଣ—ସଙ୍ଗରେ ଅନସୂୟା ଓ ପ୍ରିୟମ୍ବଦା ନ ଥିଲେ । ପ୍ରଥମେ ତ ତପୋବନର ବାହାରେ, ସେଥିରେ ପୁଣି ଶକୁନ୍ତଳା ଖଣ୍ଡିତା—ଏଣୁ ଚିହ୍ନିବା କଷ୍ଟ ହୋଇପାରେ ।

ଶକୁନ୍ତଳା ବିଦାୟ ନେଲେ । ତା'ପରେ ସଖୀମାନେ ଯେତେବେଳେ ଶୂନ୍ୟ ତପୋବନକୁ ଫେରିଆସିଲେ, ସେତେବେଳେ କି ସେମାନଙ୍କର ଶୈଶବ ସହଚରୀର

ବିରହ ସେମାନଙ୍କର ଏକମାତ୍ର ଦୁଃଖ ଥିଲା ? ଶକୁନ୍ତଳାର ଅଭାବ ଛଡ଼ା ତାହା ଭିତରେ ତପୋବନରେ କି ଆଉ କୌଣସି ପରିବର୍ତ୍ତନ ହୋଇ ନ ଥିଲା ? ଆହା, ସେମାନେ ଜ୍ଞାନ-ବୃକ୍ଷର ଫଳ ଖାଇଛନ୍ତି; ଯାହା ଜାଣି ନ ଥିଲେ ତାହା ଜାଣିଛନ୍ତି—କାବ୍ୟରେ କାଳ୍ପନିକ ନାୟିକାର ବିବରଣୀ ପଢ଼ି ନୁହେଁ, ସେମାନଙ୍କର ପ୍ରିୟତମ ସଖୀଙ୍କର ବିଦୀର୍ଣ୍ଣ ହୃଦୟ ମଧ୍ୟରେ ଅବତରଣ କରି । ଏହା ପରଠାରୁ ଅପରାହ୍ନରେ ମନ୍ଦାରେ ଜଳ ଢାଳିବାକୁ ସେମାନେ କଣ ମଝିରେ ମଝିରେ ବିସ୍ମୃତ ହେବେ ନି ? ମୃଗଶିଶୁ ଆଉ କି ତାଙ୍କର ପରିପୂର୍ଣ୍ଣ ଆଦର ପାଇବ ?

ଏଇଠି ସେହି ସଖୀଭାବ-ନିର୍ମୁକ୍ତା ସ୍ୱତନ୍ତ୍ରା ଅନସୂୟା ଏବଂ ପ୍ରିୟମ୍ବଦାଙ୍କୁ ମର୍ମରିତ ତପୋବନରେ ସେମାନଙ୍କର ନିଜର ଜୀବନ-କାହାଣୀ ସୂତ୍ରରେ ଅନ୍ୱେଷଣ କରି ଫେରୁଛୁ । ସେମାନେ ତ ଛାୟା ନୁହନ୍ତି; ଶକୁନ୍ତଳା ସହିତ ସେମାନେ ଏକ ଦିଗନ୍ତରୁ ଉଠି ଅନ୍ୟ ଦିଗନ୍ତରେ ଅସ୍ତ ହେବେ କିପରି ? ସେମାନେ ଜୀବନ୍ତ ମୂର୍ତ୍ତିମତୀ । ରଚିତ କାବ୍ୟର ବାହାରେ, ଅନଭିନୀତ ନାଟ୍ୟନେପଥ୍ୟରେ ବର୍ତ୍ତମାନ ସେମାନେ ବଢ଼ି ଉଠିଛନ୍ତି, ଅତି ପିନଦ୍ଧ ବଲ୍କଳରେ ବର୍ତ୍ତମାନ ସେମାନଙ୍କ ଯୌବନକୁ ଆଉ ବାନ୍ଧି ରଖି ପାରୁନାହାନ୍ତି । ବର୍ତ୍ତମାନ ସେମାନଙ୍କର କଳହାସ୍ୟ ଉପରେ ଅନ୍ତର୍ଗୂଢ଼ ଭାବର ଆବେଗ ନବବର୍ଷାର ପ୍ରଥମ ମେଘମାଳା ସଦୃଶ ଅଶ୍ରୁଗମ୍ଭୀର ଛାୟା ପକାଇଛୁ । ବର୍ତ୍ତମାନ କ୍ଷଣେ କ୍ଷଣେ ସେଇ ଅନ୍ୟମନସ୍କାଙ୍କର ଉଟଜ-ପ୍ରାଙ୍ଗଣରୁ ଅତିଥି ଆସି ଫେରିଯାଏ । ଆମେ ବି ଫେରିଆସିଲୁ ।

ସଂସ୍କୃତ ସାହିତ୍ୟରେ ଆଉ ଗୋଟିଏ ଅନାଦୃତା ଅଛି । ତାହା ସହିତ ପାଠକଙ୍କୁ ପରିଚିତ କରାଇବା ପାଇଁ ମୁଁ କୁଣ୍ଠିତ । ସେ କେହି ଜଣେ ବଡ଼ ନୁହେଁ, କାଦମ୍ବରୀ କାହାଣୀର ପତ୍ରଲେଖା । ସେ ଯେଉଁଠି ଆସି ଅତି ସ୍ୱଳ୍ପ ସ୍ଥାନରେ ଆଶ୍ରୟ ନେଇଛି, ସେଠାକୁ ତାହାର ଆସିବାର କୌଣସି ପ୍ରକାର ପ୍ରୟୋଜନ ନ ଥିଲା । ସ୍ଥାନଟି ତାହା ପକ୍ଷରେ ବଡ଼ ସଂକୀର୍ଣ୍ଣ, ଟିକିଏ ଏବାଟେ ସେବାଟେ ପାଦ ପକେଇଲେ ବିପଦ ।

ଏହି ଆଖ୍ୟାୟିକାର ପତ୍ରଲେଖା ଯେପରି ସୁକୁମାର ସମ୍ବନ୍ଧସୂତ୍ରରେ ଆବଦ୍ଧ ହୋଇଛି, ସେପରି ସମ୍ବନ୍ଧ ଆଉ କୌଣସି ସାହିତ୍ୟରେ କେଉଁଠି ଦେଖି ନାହିଁ । ଅଥଚ କବି ଅତି ସହଜରେ ସରଳ ଢଙ୍ଗରେ ଏହି ଅପୂର୍ବ ସମ୍ବନ୍ଧ ବନ୍ଧନର ଅବତାରଣା କରିଛନ୍ତି । କେଉଁଠି ଏହି ବୁଢ଼ିଆଣୀ ଜାଲ ପ୍ରତି ଏତେ ଟିକେ ଅସତ୍ତ୍ୱ ପ୍ରକାଶ ପାଇ ନାହିଁ । ଏଣୁ ତାହା ମୁହୂର୍ତ୍ତିକ ପାଇଁ ଛିନ୍ନ ହେବାର ଆଶଙ୍କାରୁ ବଞ୍ଚିତ । ଯୁବରାଜ ଚନ୍ଦ୍ରାପୀଡ଼ ଯେତେବେଳେ ଅଧ୍ୟୟନ ଶେଷ କରି ପ୍ରାସାଦକୁ ଫେରିଆସିଲେ, ସେତେବେଳେ ଏକଦା ସକାଳ ସମୟରେ ତାଙ୍କ ପଛେ କୈଳାସ ନାମରେ ଏକ କଞ୍ଚୁକୀ ପ୍ରବେଶ କଲା । ତାହା ପଛରେ ଗୋଟିଏ କନ୍ୟା ଆନତ-ଯୌବନା, ମଥାରେ ସାଧବବୋହ ପରି ରକ୍ତାମ୍ବରର ଅବଗୁଣ୍ଠନ, ଲଲାଟରେ

ଚନ୍ଦନ ତିଳକ, କଣ୍ଠରେ ସୁନା ମେଖଳା, କୋମଳ ତନୁଲତାର ପ୍ରତ୍ୟେକ ରେଖା ଯେପରି ସଦ୍ୟ ନୂତନ ଅଙ୍କିତ । ଏହି ତରୁଣୀ ଲାବଣ୍ୟପ୍ରଭାର ପ୍ରବାହରେ ଭବନ ପୂର୍ଣ୍ଣ କରି କ୍ୱଣିତ ମଣି-ନୂପୁରାକୁଳିତ ଚରଣରେ କଞ୍ଚୁକୀର ଅନୁଗମନ କଲା ।

କଞ୍ଚୁକୀ ପ୍ରଣାମ କରି ମାଟି ଉପରେ ଡାହାଣହାତ ରଖି ଜଣାଇଲା— କୁମାର ! ଆପଣଙ୍କର ମା' ମହାଦେବୀ ବିଳାସବତୀ ଜଣାଇଛନ୍ତି, ଏଇ କନ୍ୟା ପରାଜିତ କୁଲୁତେଶ୍ୱରର ଦୁହିତା, ବନ୍ଦିନୀ । ଏହାର ନାମ ପତ୍ରଲେଖା । ଏଇ ଅନାଥା ରାଜ-ଦୁହିତାକୁ ମୁଁ ଦୁହିତା ନିର୍ବିଶେଷରେ ଏତେ କାଳ ପାଳନ କରିଛି, ବର୍ତ୍ତମାନ ଏହାକୁ ତୁମର ତାମ୍ବୂଳକରଙ୍କ ବାହିନୀକୁ ପ୍ରେରଣ କଲି । ଏହାକୁ ସାମାନ୍ୟ ପରିଜନ ପରି ଦେଖିବେ ନାହିଁ । ବାଳିକା ପରି ଲାଳନପାଳନ କରି ନିଜର ଚିତ୍ତବୃତ୍ତିର ଚପଳତ୍ୱକୁ ନିବାରଣ କରିବେ; ଶିଷ୍ୟା ପରି ଦେଖିବେ । ସୁହୃଦଙ୍କ ଭଳି ସମସ୍ତ ବିଶ୍ରମ୍ଭବ୍ୟାପାରରେ ଏହାକୁ ଅଭ୍ୟନ୍ତରକୁ ନେବେ ଏବଂ ଏଇ କଲ୍ୟାଣୀକୁ ଏପରି ସବୁ କର୍ମରେ ନିଯୁକ୍ତ କରିବେ, ଯାହାଦ୍ୱାରା ଏ ଆପଣଙ୍କର ଅତି ଚିର ପରିଗ୍ରହିକା ହୋଇପାରେ ।

କୈଳାସ ଏହି କଥା କହିବାରୁ ପତ୍ରଲେଖା ତାଙ୍କୁ ଅଭିଜାତ ପ୍ରଣାମ କଲା ଏବଂ ଚନ୍ଦ୍ରାପୀଡ଼ ତାକୁ ଅନିମେଷ ଲୋଚନରେ ସୁଚିର କାଳ ନିରୀକ୍ଷଣ କରି—'ମା'ଙ୍କର ଆଦେଶ ଅନୁଯାୟୀ କାମ କରିବ' କହି ଦୂତକୁ ବିଦାୟ କରିଦେଲେ ।

ପତ୍ରଲେଖା ପତ୍ନୀ ନୁହେ, ପ୍ରଣୟିନୀ ନୁହେଁ, କିଙ୍କରୀ ନୁହେଁ, ପୁରୁଷର ସହଚରୀ । ଏହି ପ୍ରକାର ଅପରୂପ ସଖୀତ୍ୱ ଦୁଇ ସମୁଦ୍ରର ମଧ୍ୟରେ ଥିବା ଏକ ବାଲିଚଡ଼ା ଭଳି । କିପରି ଏହା ରକ୍ଷା ପାଇବ ? ନବଯୌବନ କୁମାର-କୁମାରୀଙ୍କ ମଧ୍ୟରେ ଅନାଦିକାଳରୁ ଯେଉଁ ଚିରନ୍ତନ ପ୍ରବଳ ଆକର୍ଷଣ ରହିଛି, ତାହା ଯେପରି ଦୁଇ ଆଡ଼ୁ ଏହି ସଂକୀର୍ଣ୍ଣ ବନ୍ଧଟିକୁ କ୍ଷୟ ନ କରେ ।

କିନ୍ତୁ କବି ସେଇ ଅନାଥା ରାଜକନ୍ୟାକୁ ଚିରଦିନ ଏହି ଅପ୍ରଶସ୍ତ ଆଶ୍ରୟ ମଧ୍ୟରେ ରଖିଲେ । ଏଇ ଗଣ୍ଡିର ରେଖାମାତ୍ର ବାହାରକୁ ତାଙ୍କୁ କୌଣସି ଦିନ ଟାଣିଲେ ନାହିଁ । ହତଭାଗିନୀ ବନ୍ଦିନୀ ପ୍ରତି କବିଙ୍କର ଏହା ଅପେକ୍ଷା ଉପେକ୍ଷା ଆଉ କିପରି ହୋଇପାରେ ? ଗୋଟିଏ ସୂକ୍ଷ୍ମ ଯବନିକାର ଆଢ଼ୁଆଳରେ ବାସ କରି ସେ ନିଜର ସ୍ୱାଭାବିକ ସ୍ଥାନ ପାଇଲା ନାହିଁ । ପୁରୁଷର ହୃଦୟ ପାର୍ଶ୍ୱରେ ସେ ଜଗିରହିଲା, କିନ୍ତୁ ଭିତରେ ପଦାର୍ପଣ କଲା ନାହିଁ । କୌଣସି ଦିନ ଗୋଟିଏ ଅସତର୍କ ବସନ୍ତ-ପବନରେ ଏଇ ସଖୀତ୍ୱ ପର୍ଦ୍ଦାର ପ୍ରାନ୍ତ ମଧ୍ୟ ଟିକିଏ ହେଲେ ଉଡ଼ିଲା ନାହିଁ ।

ଅଥଚ ସଖୀତ୍ୱ ଭିତରେ ଲେଶମାତ୍ର ଅନ୍ତରାଳ ନ ଥିଲା । କବି କହିଛନ୍ତି— ପତ୍ରଲେଖା ସେଇ ପ୍ରଥମ ଦିନଠାରୁ ଚନ୍ଦ୍ରାପୀଡ଼ଙ୍କୁ ଦେଖି 'ସେବା-ସମୁପଜାତାନନ୍ଦା' ହୋଇ, ଦିନ ନାହିଁ ରାତି ନାହିଁ ଉପବେଶନରେ, ଉତ୍ଥାନ ଭ୍ରମଣରେ ଛାୟା ଭଳି ରାଜପୁତ୍ରଙ୍କ ପାର୍ଶ୍ୱ ପରିତ୍ୟାଗ କରି ନାହିଁ । ତାହାକୁ ଦେଖି ଚନ୍ଦ୍ରାପୀଡ଼ଙ୍କ ପ୍ରାଣରେ ପ୍ରୀତି ଆନ୍ଦୋଳିତ ହୋଇଥିଲା । ସେ ପ୍ରତିଦିନ ତାହାର

ପ୍ରସାଦ ରକ୍ଷାକଲେ ଏବଂ ସମସ୍ତ ବିଶ୍ୱାସ କାର୍ଯ୍ୟରେ ଏହାଙ୍କୁ ଆତ୍ମହୃଦୟଠାରୁ ଅବ୍ୟତିରିକ୍ତ ମନରେ ଚିନ୍ତାକରିବାକୁ ଲାଗିଲେ ।

ଏହି ସମ୍ବନ୍ଧଟି ଅପୂର୍ବ ସୁମଧୁର; କିନ୍ତୁ ଏହା ମଧ୍ୟରେ ନାରୀ ଅଧିକାରର ପ୍ରତିଷ୍ଠା ନାହିଁ । ନାରୀ ସହ ନାରୀର ଯେପରି ଲଜ୍ଜାବୋଧହୀନ ସଖୀ ସମ୍ପର୍କ ଥାଇପାରେ, ପୁରୁଷ ସହିତ ତାହାର ସେପରି ଅସଙ୍କୋଚ ଅନବଚ୍ଛିନ୍ନ ନୈକଟ୍ୟରେ ପତ୍ରଲେଖାର ନାରୀମର୍ଯ୍ୟାଦା ପ୍ରତି କାଦମ୍ବରୀ କାବ୍ୟରେ ଯେଉଁ ଗୋଟିଏ ଅବଜ୍ଞା ପ୍ରକାଶ ପାଇଛି, ତାହା କଣ ପାଠକକୁ ଆଘାତ କରେ ନାହିଁ ? କେଉଁଥି ପାଇଁ ଆଘାତ ? ଆଶଙ୍କାରେ ନୁହେଁ, ସଂଶୟରେ ନୁହେଁ । କାରଣ, କବି ଯଦି ଲେଶମାତ୍ର ଆଶଙ୍କା-ସଂଶୟର ଆରୋପ କରିଥାନ୍ତେ, ତେବେ ତାହା ପତ୍ରଲେଖାର ନାରୀତ୍ୱ ପ୍ରତି ସମ୍ମାନଜନକ ହୋଇଥାନ୍ତା । କିନ୍ତୁ ଏହି ଦୁଇଟି ତରୁଣ ତରୁଣୀ ମଧ୍ୟରେ ଲଜ୍ଜା, ଆଶଙ୍କା ଏବଂ ସନ୍ଦେହର ଦୋଦୁଲ୍ୟମାନ ସ୍ନିଗ୍ଧ ଛାୟା ଟିକିଏ ପର୍ଯ୍ୟନ୍ତ ନାହିଁ । ପତ୍ରଲେଖା ତାହାର ଅପୂର୍ବ ସମ୍ବନ୍ଧବଶତଃ ଅନ୍ତଃପୁର ତ ତ୍ୟାଗ କରିଅଛି, କିନ୍ତୁ ସ୍ତ୍ରୀ ପୁରୁଷ ପରସ୍ପର ସମୀପବର୍ତ୍ତୀ ହେଲେ ସ୍ୱଭାବତଃ ଯେଉଁ ସଂକୋଚର ଆବିର୍ଭାବ ହୋଇଥାଏ, ଏପରି କି ସହାସ୍ୟ ଛଳନାରେ ଯେଉଁ ନୀଳାମ୍ବୁଜ କମ୍ପମାନ ମାନସିକ ଅନ୍ତରାଳ ନିଜେ ଉନ୍ମୋଚିତ ହୋଇ ପଡ଼ିଥାଏ—ଏମାନଙ୍କ ମଧ୍ୟରେ ସେତିକି ଟିକିଏ ବି ହୋଇନାହିଁ । ସେହି କାରଣରୁ ଏହି ଅନ୍ତଃପୁରବିଚ୍ୟୁତା ଅନ୍ତଃପୁରିକା ଲାଗି ସର୍ବଦା ଦୁଃଖ ହୋଇଥାଏ ।

ଚନ୍ଦ୍ରାପୀଡ଼ ସହ ପତ୍ରଲେଖାର ନୈକଟ୍ୟ ବି ଅସାମାନ୍ୟ । ଦିଗ୍‌ବିଜୟଯାତ୍ରା ସମୟରେ ଗୋଟିଏ ହସ୍ତୀପୃଷ୍ଠରେ ପତ୍ରଲେଖାକୁ ସମ୍ମୁଖରେ ବସାଇ ରାଜପୁତ୍ର ଆସନ ଗ୍ରହଣ କରିଥିଲେ । ଶିବିରରେ ରାତ୍ରିକାଳରେ ଯେତେବେଳେ ଚନ୍ଦ୍ରାପୀଡ଼ ନିଜ ଶଯ୍ୟାର ଅନତି ଦୂରରେ ପୁରୁଷ ସଖା ବୈଶମ୍ପାୟନ ସହିତ ଆଳାପ କରୁଥାନ୍ତି, ସେତେବେଳେ ପାଖରେ କୌଣସି ଏକ ଶଯ୍ୟାରେ ସଖୀ ପତ୍ରଲେଖା ପ୍ରସୁପ୍ତା ଥାଏ ।

ଅବଶେଷରେ କାଦମ୍ବରୀ ସହିତ ଚନ୍ଦ୍ରାପୀଡ଼ର ଯେତେବେଳେ ପ୍ରଣୟ ସଂଘଟନ ହେଲା, ସେତେବେଳେ ପତ୍ରଲେଖାର ସ୍ଥାନ ଟିକିଏ ଅବ୍ୟାହତ ରହିଥିଲା । ପୁରୁଷଚିତ୍ତରେ ଯେତେବେଳେ ନାରୀ ପାଇଁ ମହାମହୋତ୍ସବର ତରଙ୍ଗ ଦେଖାଗଲା, ସେତେବେଳେ ପତ୍ରଲେଖାକୁ ତାର ଟିକିଏ ସ୍ଥାନରୁ ବଞ୍ଚିତ କରିବା ପାଇଁ ଆବଶ୍ୟକତା ଦେଖାଗଲା ନାହିଁ ।

ପତ୍ରଲେଖା ପ୍ରତି କାଦମ୍ବରୀର ଈର୍ଷାର ଆଭାସ ମାତ୍ର ନ ଥିଲା । ଏପରି କି ଚନ୍ଦ୍ରାପୀଡ଼ ସହ ପତ୍ରଲେଖାର ବନ୍ଧୁତ୍ୱ ଜାଣି ମଧ୍ୟ କାଦମ୍ବରୀ ତାହାକୁ ପ୍ରିୟ ସଖୀଜନରେ ସାଦରରେ ଗ୍ରହଣ କଲେ । କାଦମ୍ବରୀ କାବ୍ୟ ମଧ୍ୟରେ ପତ୍ରଲେଖା ଯେ ପ୍ରକାର ଅପରୂପ ଭୂଖଣ୍ଡରେ ଅଛି, ସେଠାରେ ଈର୍ଷା-ସଂଶୟ-ସଂକଟ କିଛି ହେଲେ ନାହିଁ । ତାହା ସ୍ୱର୍ଗ ପରି ନିଷ୍କଣ୍ଟକ; କିନ୍ତୁ ସେଠାରେ ସ୍ୱର୍ଗର ଅମୃତବିନ୍ଦୁ କାହିଁ ?

ତାହାର ସମ୍ପର୍କରେ ପ୍ରେମର ଉଚ୍ଛ୍ୱସିତ ଅମୃତପାନ ଗୁଲିଛୁ । ତାହା ଆସ୍ୱାଣରେ ବ କୌଣସି ଦନ ତାହାର କୌଣସି ଶିରାର ରକ୍ତ ଚଞ୍ଚଳ ହୋଇ ଉଠି ନାହିଁ । ସେ କ'ଣ ଚନ୍ଦ୍ରାପୀଡ଼ର ଗୁସ୍ୱା ? ରାଜପୁତ୍ରର ତପ୍ତ ଯୌବନର ତାପ ଟିକେ ହେଲେ କ'ଣ ତାକୁ ସ୍ପର୍ଶ କର ନାହିଁ ? କବ ସେ ପ୍ରଶ୍ନର ଉତ୍ତର ଦେବାକୁ ଉପେକ୍ଷା କରଛନ୍ତି । କାବ୍ୟ-ସୃଷ୍ଟିର ପତ୍ରଲେଖା ଏତେ ଉପେକ୍ଷିତା !

ପତ୍ରଲେଖା ଯେତେବେଳେ କ୍ଷୟୂରକାଳ କାଦମ୍ବରୀ ସହ ଏକତ୍ରବାସ ପରେ ବାର୍ତ୍ତାସହ ଚନ୍ଦ୍ରାପୀଡ଼ ନକଟକୁ ଫେରଆସିଲା, ଯେତେବେଳେ ସ୍ମିତହାସ୍ୟଦ୍ୱାରା ଦୂରରୁ ଚନ୍ଦ୍ରାପୀଡ଼ ପ୍ରତ ପ୍ରୀତ ପ୍ରକାଶପୂର୍ବକ ନମସ୍କାର କଲା, ସେତେବେଳେ ପତ୍ରଲେଖା ପ୍ରକୃତବଲ୍ଲଭା ହେଲେ ବ କାଦମ୍ବରୀର ପ୍ରସାଦଲବ୍ଧ ସୌଭାଗ୍ୟରୁ ବଲ୍ଲଭଚରଣ ପ୍ରାପ୍ତ ହେଲା । ପତ୍ରଲେଖାକୁ ଅତଶସ୍ନ ଆଦର ଦେଖାଇ ଯୁବରାଜ ଆସନରୁ ଉଠି ଆଲିଙ୍ଗନ କଲେ ।

ଚନ୍ଦ୍ରାପୀଡ଼ର ଏଇ ଆଦର, ଏଇ ଆଲିଙ୍ଗନଦ୍ୱାରା ପତ୍ରଲେଖା କବକର୍ତ୍ତୃକ ଅନାଦୃତା । ଆମେ କନ୍ତୁ କବ ଅନ୍ଧ । କାଦମ୍ବରୀ ଆଡକୁ ଦେଖି ଦେଖି ତାଙ୍କର ଚକ୍ଷୁ ଝଲସିଯାଇଛୁ । ଏହି କ୍ଷୁଦ୍ର ବନ୍ଧମାଟିକୁ ସେ ଦେଖିପାର ନାହାନ୍ତି । ଏହା ମଧ୍ୟରେ ପ୍ରଣୟତୃଷାର୍ତ୍ତ ଚରବଞ୍ଚିତ ଗୋଟିଏ ନାରୀହୃଦୟ ରହିଯାଇଛୁ । ସେ କଥା ସେ ସଂପୂର୍ଣ୍ଣ ଭୁଲି ଯାଇଛନ୍ତି । ବାଣଭଟ୍ଟଙ୍କ କଲ୍ପନା ମୁକ୍ତହସ୍ତ । ଅସ୍ଥାନରେ ଅପାତ୍ରରେ ସେ ଅଜସ୍ର ବର୍ଷଣ କରଛନ୍ତି । କେବଳ ତାଙ୍କର ସମସ୍ତ କୃପଣତା ଏଇ ବଗତନାଥା ରାଜଦୁହତା ପ୍ରତ । ସେ ପକ୍ଷପାତ ଦୂଷିତ ପରମ ଅନ୍ଧତାବଶତଃ ପତ୍ରଲେଖା ହୃଦୟର ନଗୂଢ଼ତମ କଥା କନ୍ଥୁ ହେଲେ ଜାଣିପାରଲେ ନାହିଁ । ସେ ତରଙ୍ଗଲୀଳାକୁ ଶେଷ ପର୍ଯ୍ୟନ୍ତ ଆସିବାର ଅନୁମତ ଦେଇଛନ୍ତି । ପୂର୍ଣ୍ଣଚନ୍ଦ୍ରୋଦୟ ମଧ୍ୟ ତାଙ୍କର ଆଦେଶ ଅଗ୍ରାହ୍ୟ କରନାହିଁ । ସେଥିପାଇଁ କାଦମ୍ବରୀ ପଢ଼ି କେବଳ ମନେ ହୁଏ ଅନ୍ୟ ସମସ୍ତ ନାୟିକାର କଥା ଅନାବଶ୍ୟକ ବାହୁଲ୍ୟ ସହିତ ବର୍ଣ୍ଣିତ ହୋଇଛୁ । କନ୍ତୁ ପତ୍ରଲେଖା କଥା କନ୍ଥୁ ବ କୁହା ହୋଇ ନାହିଁ ।

———

# କର୍ତ୍ତାଙ୍କ ଭୂତ

(କଥିକା)

ଅନୁବାଦକ—**ଅଧ୍ୟାପକ ଶ୍ରୀନିବାସ ମିଶ୍ର**

ବୁଢ଼ା କର୍ତ୍ତାଙ୍କ ମରଣ ବେଳେ ଦେଶସାରା ସମସ୍ତେ କହିଉଠିଲେ, 'ତୁମେ ଗଲେ ଆମମାନଙ୍କର କି ଦଶା ହେବ ?'

ଏହା ଶୁଣି ତାଙ୍କ ମନରେ ମଧ୍ୟ ଦୁଃଖ ହେଲା । ସେ ଭାବିଲେ, 'ମୁଁ ଗଲେ କିଏ ଏମାନଙ୍କୁ ଅଣ୍ଡା ରଖିବ ?'

ତା ବୋଲି ମରଣକୁ ତ ଏଡ଼ିଦେବାର ଜୋ ନାହିଁ । ତେବେ ଦେବତା ଦୟା କରି କହିଲେ, 'ଭାବନା କଣ ? ଲୋକଟା ଭୂତ ହୋଇ ଏମାନଙ୍କ କାନ୍ଧ ଉପରେ ବସି ଥାଉ ନା ! ମନୁଷ୍ୟର ମୃତ୍ୟୁ ଅଛି, ଭୂତର ତ ମୃତ୍ୟୁ ନାହିଁ ।'

ଦେଶ ଲୋକମାନେ ଭାରି ନିଶ୍ଚିନ୍ତ ହେଲେ । କାରଣ ଭବିଷ୍ୟତକୁ ମାନିଲେ ତା ଲାଗି ଯେତେ କିଛି ଭାବନା, ଭୂତକୁ ମାନିଲେ ତ କୌଣସି ଭାବନା ନାହିଁ । ଭୂତ ମୁଣ୍ଡକୁ ସବୁ ଚିନ୍ତା ଆସେ, ଅଥଚ ତା'ର ମୁଣ୍ଡ ନାହିଁ; ସୁତରାଂ କାହା ଲାଗି ମୁଣ୍ଡବିଥା ମଧ୍ୟ ନାହିଁ ।

ତେବେ ସ୍ୱଭାବ ଦୋଷରୁ ନିଜ ଚିନ୍ତା ନିଜେ କରିବାକୁ ଯାଉଥିବା ଲୋକ-ମାନଙ୍କୁ ଭୂତର କାନମୋଡ଼ା ଖାଇବାକୁ ପଡ଼େ । ସେ କାନମୋଡ଼ାକୁ ଏଡ଼ିଦେଇ ହୁଏ ନାହିଁ, ତାଠାରୁ ପଳାଇବାର ବାଟ ବି ନାହିଁ । ତା ବିରୁଦ୍ଧରେ ନାଲିସ ଚଳେନା, ତା ସମ୍ବନ୍ଧରେ ବିଚାର ମଧ୍ୟ ନାହିଁ । ଦେଶସାରା ଲୋକ ଭୂତଗ୍ରସ୍ତ ହୋଇ ଆଖିବୁଜି ଚାଲନ୍ତି । ଦେଶର ତତ୍ତ୍ୱଜ୍ଞାନୀମାନେ କହନ୍ତି, 'ଏହି ଆଖିବୁଜି ଚାଲିବା ହେଉଛି ଜଗତର ସବୁଠାରୁ ଆଦିମ ଚଳି । ଏହାକୁ କହନ୍ତି ଅଦୃଷ୍ଟ ବଳରେ ଚାଲିବା । ସୃଷ୍ଟିର ପ୍ରଥମ ଚକ୍ଷୁହୀନ କୀଟାଣୁମାନେ ଏହିପରି ଚାଲୁଥିଲେ । ଘାସ ଓ ଗଛ ଭିତରେ ସୁଦ୍ଧା ଆଜି ଏହି ଚାଲିବାର ଆଭାସ ପ୍ରଚଳିତ ।'

ଏହା ଶୁଣି ଭୂତଗ୍ରସ୍ତ ଦେଶ ନିଜର ଆଦିମ ଆଭିଜାତ୍ୟ ଅନୁଭବ କରେ । ତହିଁରୁ ବେଶ୍ ଆନନ୍ଦ ମଧ୍ୟ ପାଏ ।

ଭୂତର ନାଏବ ଭୂତ ଜେଲଖାନାର ଦାରୋଗା । ଏହି ଜେଲଖାନାର ପାଚେରୀ ଆଖିକୁ ଦେଖାଯାଏ ନା । ତେଣୁ ତାକୁ କଣାକଣ କ ଉପାୟରେ ବାହାରିବା ସମ୍ଭବ ଏହା ଭାବି ହୁଏ ନାହିଁ । ଏ ଜେଲଖାନାରେ ଯେଉଁ ଘଣା ଅନବରତ ବୁଲାଇବାକୁ ହୁଏ, ତହିଁରୁ ହାଟରେ ବିକିବା ଭଳି ଛଟାଙ୍କିଏ ହେଲେ ତେଲ ବାହାରେ ନାହିଁ––ବାହାରିବା ଭିତରେ ବାହାରିଯାଏ ମଣିଷର ତେଜ । ସେହି ତେଜ ବାହାରିଗଲେ ମଣିଷ ଥଣ୍ଡା ହୋଇଯାଏ । ସେଇହେତୁ ଭୂତର ରାଜତ୍ୱରେ ଅନ୍ନ, ବସ୍ତ୍ର, ସ୍ୱାସ୍ଥ୍ୟ ପ୍ରଭୃତି କିଛି ନ ଥାଉ ପଛକେ' ଶାନ୍ତି ଥାଏ । କ'ଣ ଯେ ସେ ଶାନ୍ତି ଏ.ହେଉଛି ତା'ର ଗୋଟିଏ ଦୃଷ୍ଟାନ୍ତ, ଅନ୍ୟ ଦେଶରେ ଭୂତମାନଙ୍କର ଉପଦ୍ରବ ବଢ଼ିଲେ ମନୁଷ୍ୟ ଅସ୍ଥିର ହୋଇ ଗୁଣିଆଙ୍କର ସନ୍ଧାନ କରନ୍ତି, ଏଠାରେ ସେ ଚିନ୍ତା ସୁଦ୍ଧା ନାହିଁ । କାରଣ ଗୁଣିଆକୁ ତ ଆଗରୁ ଭୂତ ମାଡ଼ିବସିଛି ।

ଏହି ଭାବେ ଦିନ ବିତୁଥାଏ, ଭୂତ ଶାସନତନ୍ତ୍ର ବିଷୟରେ କାହା ମନରେ ଦ୍ୱିଧା ଜାତ ହେବାର ନ ଥାଏ । ଚିରକାଳ ଗର୍ବ କରି ହେଉଥାଏ ଯେ ଏମାନଙ୍କ ଭବିଷ୍ୟତଟା ପୋଷାମେଣ୍ଢା ଭଳି ଭୂତର ଖୁଣ୍ଟରେ ବନ୍ଧା । ସେ ଭବିଷ୍ୟତ 'ଭଁ୍ୟା' କରେନା କ 'ମଁ୍ୟା' କରେ ନା । ଚୁପ୍ କରି ମାଟିରେ ପଡ଼ିଥାଏ, ଯେତେ ଅବା ଚିରକାଳ ଲାଗି ପୁରାପୁରି ମାଟି । କେବଳ ଗୋଟିଏ ଅତି ସାମାନ୍ୟ କଥାରେ ଟିକିଏ ଅଡୁଆ ପଡ଼ିଲା । ଘଟଣାଟି ହେଉଛି ପୃଥିବୀର ଅନ୍ୟ ଦେଶମାନଙ୍କରେ ତ ଏପରି ଭୂତ ଲାଗେନା । ତେଣୁ ସେ ଦେଶମାନଙ୍କରେ ବୁଲୁଥିବା ଘଣାଗୁଡ଼ିକରୁ ତେଲ ବାହାରେ । ଗ୍ରୁଡ଼ର ଚକ୍ର କଗାଡ଼ ଭୂତର ଖର୍ପରରେ ଢାଳି ଦେବା ଲାଗି ନୁହେଁ, ବରଂ ଭବିଷ୍ୟତରେ ରଥଚକଟିକୁ ସଚଳ ରଖିବା ପାଇଁ । ଫଳରେ ସେଠାରେ ମନୁଷ୍ୟ ମୋଟେ ହେଲେ ଜଡ଼ ହୋଇ ଯାଇ ନାହିଁ । ସେ ବେଶ ଜାଗ୍ରତ ।

ଏଆଡ଼େ ବେଶ୍ ଥଣ୍ଡା, ଭୂତର ସାବି ରାଜ୍ୟରେ ଶୁଣାଯାଉଛି, 'ପୁଅ ଶୋଇଲା, ପଡ଼ା ଶାନ୍ତହେଲା ଗୀତ ।

ଏଥିରେ ପୁଅର ବି ଆରାମ, ପୁଅର ଅଭିଭାବକର ମଧ୍ୟ ଆରାମ । ଆଉ, ପଡ଼ା କଥା ତ କୁହାଅଛି । କିନ୍ତୁ 'ଦେଶକୁ ବର୍ଗୀ ଆସିଲେ' ।

ନ ହେଲେ ଛନ୍ଦ ମିଳେନା । ଇତିହାସର ପଦଟା ବି ଖାପ୍‌ଛଡ଼ା ହୋଇ ରହେ ।

ଦେଶରେ ଯେତେ ଶିରୋମଣି, ଚୂଡ଼ାମଣି ଥିଲେ ସମସ୍ତଙ୍କୁ ପଚରାଗଲା, ଏପରି ହେଲା କାହିଁ କି ?

ସେମାନେ ସମସ୍ତେ ଚୁଟି ହଲାଇ ଏକବାକ୍ୟରେ କହିଲେ, 'ଏଟା ଭୂତର ଦୋଷ ନୁହେଁ, ଭୂତମାନଙ୍କର ଦେଶର ମଧ୍ୟ ଦୋଷ ନୁହେଁ, ଏକମାତ୍ର ବର୍ଗୀମାନଙ୍କର ଦୋଷ । ବର୍ଗୀ ଆସେ କାହିଁକି ?

ଶୁଣି ସମସ୍ତେ କହିଲେ, 'ତା ତ ନିଶ୍ଚୟ ।' ବେଶ୍ ସାନ୍ତ୍ୱନା ବୋଧ କଲେ ।

ଦୋଷ ଯାହାର ହିଁ ହେଉ, ସରକାର ଏପଟ ସେପଟ ବୁଲେ ଭୂତର ପିଆଦା, ଆଉ ସଦର ରାସ୍ତାବାଟେ ବୁଲେ ଅଭୂତର ପିଆଦା; ଗୃହସ୍ଥର ଘରେ ରହିବା କଷ୍ଟ, ଘରୁ ବାହାରିବାର ବାଟ ନାହିଁ । ଗୋଟିଏ ଦିଗରୁ ଜଣେ ଡାକେ, 'ଖଜଣା ଦିଅ ।' ଅନ୍ୟ ଦିଗରୁ ଆଉ ଜଣେ ପାଟି କରି କହେ, 'ଖଜଣା ଦିଅ ।' ବର୍ତ୍ତମାନ କଥାଟି ହେଉଛି, 'ଖଜଣା ଦିଆହେବ କଅଣ ?'

ଏତେବେଳଯାଏ ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମରୁ ଦଳଦଳ ନାନା ଜାତିର ଚଢ଼େଇ ଆସି ସବୁ ଧାନ ଖାଇଗଲେ, କାହାରି ହୋସ ରହିଲା ନାହିଁ । ପୃଥିବୀର ହୁସିଆର ଲୋକମାନେ ତାଙ୍କ ପାଖରେ ପଶିବାକୁ ଚାହାନ୍ତି ନାହିଁ, ପଶିଲେ ହୁଏତ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିବ । କିନ୍ତୁ ସେମାନେ ଅକସ୍ମାତ୍ ଏମାନଙ୍କର ଖୁବ୍ ପାଖକୁ ଲାଗି ଆସନ୍ତି, ଆଉ ପ୍ରାୟଶ୍ଚିତ୍ତ ବି କରନ୍ତି ନାହିଁ । ଶିରୋମଣି ଚୂଡ଼ାମଣି ଦଳ ପୋଥି ଖୋଲି କହନ୍ତି, ବେହୁସିଆର ଲୋକମାନେ ପବିତ୍ର, ହୁସିଆରମାନେ ହିଁ ଅଶୁଚି; ତେଣୁ ହୁସିଆର ଲୋକମାନଙ୍କ ପ୍ରତି ଉଦାସୀନ ରୁହ, 'ପ୍ରବୁଦ୍ଧମିବ ସୁପ୍ତଃ ।' ଏକଥା ଶୁଣି ସମସ୍ତଙ୍କର ଖୁବ୍ ଆନନ୍ଦ ହୁଏ ।

କିନ୍ତୁ ତାହା ସତ୍ତ୍ୱେ 'ଖଜଣା ଦେବୁ କ'ଣ'—ଏ ପ୍ରଶ୍ନକୁ ଏଡ଼ି ଦେଇ ହୁଏ ନାହିଁ ।

ଶ୍ମଶାନରୁ, ମଶାଣିରୁ ଝଡ଼ ବତାସରେ ହା ହା କରି ତା'ର ଉତ୍ତର ଆସେ, 'ମହତ ଦେଇ, ଇଜ୍ଜତ ଦେଇ, ଇମାନ ଦେଇ, ବୁକୁର ରକ୍ତ ଦେଇ ।'

ପ୍ରଶ୍ନର ହିଁ ଏହି ଦୋଷ, ଯେତେବେଳେ ତାହା ଆସେ, ଏକା ଆସେ ନା । ତେଣୁ ଆଉ ଏକ ପ୍ରଶ୍ନ ଉଠିଛି, 'ଭୂତର ଶାସନଟା କ'ଣ ଅନନ୍ତକାଳ ପର୍ଯ୍ୟନ୍ତ ଚାଲିବ ?

ଏହା ଶୁଣି ନିଦମାଉସୀ, ନିଦପିଉସୀ ଏବଂ ନିଦମାଉସୀ ପିଉସୀଙ୍କ ସନ୍ତାନମାନେ କାନରେ ହାତ ଦେଇ କହନ୍ତି, 'କି ସର୍ବନାଶ, ଏଭଳି ପ୍ରଶ୍ନ ତ ବାପ ଜନ୍ମରେ ଶୁଣି ନାହୁଁ । ତାହେଲେ ସନାତନ ନିଦ୍ରାର କଣ ହେବ—ସେହି ଆଦିମତମ ସକଳ ଜାଗରଣ ଅପେକ୍ଷା ପ୍ରାଚୀନତମ ନିଦ୍ରାର ।

ପ୍ରଶ୍ନକାରୀ କହନ୍ତି, 'ତା' ତ ବୁଝିଲୁଁ, କିନ୍ତୁ ଆଧୁନିକତମ ଧାନଖିଆ ଚଢ଼େଇ ପଲ ଏବଂ ଉପସ୍ଥିତତମ ବର୍ଗୀର ଦଳ, ଏମାନଙ୍କ ଲାଗି କ'ଣ କରାଯିବ ?'

ମାଉସୀ ପିଉସୀ କହନ୍ତି, 'ଚଢ଼େଇ ପଲଙ୍କୁ କୃଷ୍ଣନାମ ଶୁଣେଇବୁଁ, ଆଉ ବର୍ଗୀ ଦଳଙ୍କୁ ମଧ୍ୟ ।'

ସ୍ୱାଧୀନମାନେ ଉଦ୍ଧତ ହୋଇ କହିଉଠନ୍ତି, 'ଯେପରି ହେଉନା କାହିଁକି ଭୂତ ଛଡ଼ାଇବୁଁ ।'

ଭୂତର ନାଏବ ଆଖି ମଟମଟ କରି କହେ, 'ଚୁପ୍, ବର୍ତ୍ତମାନ ସୁଦ୍ଧା ଘଣ୍ଟା ଅଚଳ ହୋଇ ନାହିଁ ।'

ଏହା ଶୁଣି ଦେଶର ଶିଶୁ ନିସ୍ତବ୍ଧ ହୁଏ, ତାପରେ କଡ଼ ଲେଉଟାଇ ଶୁଏ ।

ଅସଲ କଥାଟା ହେଉଛି ବୁଢ଼ା କର୍ତ୍ତା ବସ୍ତୁ ନାହିଁ, ମରି ମଧ୍ୟ ନାହିଁ, ଭୂତ ହୋଇଛି । ଦେଶଟାକୁ ସେ ହଲଚଲ ହେବାକୁ ଦଏନା, ଅଥଚ ଛାଡ଼ି ବି ଦଏନା ।

ଦେଶ ଭିତରେ ନାଏବ ଭୟରେ ଦାନବେଳେ ମଧ୍ୟ କଥା କହୁ ନ ଥିବା ଜଣେ ଦୁଇ ଜଣ ଲୋକ ଗଣ୍ଡିର ସନ୍ଧିରେ ହାତଯୋଡ଼ି କହନ୍ତି, 'କର୍ତ୍ତା, ବର୍ତ୍ତମାନ କ'ଣ ଛାଡ଼ିବା ବେଳ ହୋଇନାହିଁ !'

କର୍ତ୍ତା କହନ୍ତି, 'ରେ ଅବୋଧ, ମୋର ଧରିବା କଥା ନାହିଁ କି ଛାଡ଼ିବା କଥା ନାହିଁ । ତୁମ୍ଭେମାନେ ଛାଡ଼ିଲେ ତ ମୋର ମୁକ୍ତି ।'

ସେମାନେ କହନ୍ତି, "କର୍ତ୍ତା, ଭୟ ଲାଗୁଛି ଯେ !"

କର୍ତ୍ତା କହନ୍ତି, "ସେଇଠି ତ ଭୂତ !"

———